# KABITAKALAP.

## PART I.

BY

GOBINDA RATH,

THIRD EDITION.



# କବିତାକଳାପ ।

ପ୍ରଥମ ଭାଗ

ଶ୍ରୀ ଗୋବିନ୍ଦରଥଙ୍କ ବିରଚିତ



CUTTACK,

Printed by the Cuttack Printing Company.

1885.

ମୂଲ୍ୟ_ଦୁଇଅଣା

# ସୂଚୀପତ୍ର ।



---

# କବିତାକଲାପ ।

## ପୂର୍ଣ୍ଣିମାର ନିଶାକାଳ ।

୧

ଅହା କି ଦୃଶ୍ୟ,          ଗଗନ ସୁଦୃଶ୍ୟ
ଚାରୁ ତାରାବଳୀ          ଦୀପରୂପେ ଜ୍ୱଳ
ଅପୂର୍ବ ସୁନ୍ଦର ପ୍ରକୃତିରଙ୍ଗେ ।
ନିସ୍ତବ୍ଧ ସକଳ          ନାହିଁ କୋଳାହଳ
ସରିତର ଜଳ          ଧୁଏ କଲ୍ କଲ
ସୁନିର୍ମଳ ବିଧୁମଣ୍ଡଳ ସଙ୍ଗେ ।

୨

ଦେଖି ଚନ୍ଦ୍ରରୂପ          ଭାବେ ନାନା ରୂପ
ପ୍ରକୃତି ମସ୍ତକେ          କେ ଦେଲା ଛୁଟକେ
ଏ ଚନ୍ଦନଟୋପା ଅତି ଯତନେ ।
କିବା ରୌପ୍ୟ ଥାଳୀ          ଧରି ନନ୍ଦିବାଳୀ
ଭକ୍ତିସହକାରେ          ଆନନ୍ଦଭାବରେ
ଉପହାରେ ପୂଜେ ଜଗଜ୍ଜୀବନେ ।

୩

ମନ୍ଦସମୀରଣ          ବହେ କ୍ଷଣ କ୍ଷଣ
ରନ୍ତୁ ପ୍ରେମାସ୍ପଦ          ପଲ୍ଲବ ଦୋଳିତ
ଝୁରୁ ଝୁରୁ ଶବ୍ଦ ତରୁପୁଞ୍ଜରେ ।
ଦେଖି ପବମାନ          କରେ ଅନୁମାନ
ରଜନୀ କାମିନୀ          ଭାବୁକ ମୋହିନୀ
କ୍ଷଣିକ ନିଶ୍ୱାସ ଛାଡୁଚି କରେ ।

୪

ନିଶାର ତୁଷାର     ଅତି ଅନ୍ଧକାର
ହୋଇ ଝପ ଝପ     ପଡେ ଥପ ଥପ
ଅତିଶିକ୍ତ କରେ ମେଦିନୀ ଦେହେ ।
ନକ୍ଷତ୍ର ମଣ୍ଡିତା     ଚନ୍ଦ୍ରେ ଅଲୋକିତା
ପବନ ସେବିତା     ତହିଁ ପୁଲକିତା
ରଜନୀ ଅନନ୍ଦ ଅଶ୍ରୁ କି ବହେ ।

୫

ଭରେ ଅବନତ     ଅଟଇ ସତତ
ସୂର୍ଯ୍ୟରେ ତାପିତ     ତେଣୁ କ୍ଲେଶାନ୍ୱିତ
ମେଦିନୀମଣ୍ଡଳ, ଏ ଭାବ ଜାଣି ।
ସତେ ନିଶାକର     ହୋଇ ଦୟାପର
ତାର କ୍ଲେଶରାଶି     ଦେବାକୁ କି ନାଶି
ସୁଶୀତଳ ଜଳ ସିଞ୍ଚଇ ଆଣି ।

୬

ଯେତେ ଗ୍ରହଚର     ଗଗନେ ବିହାର
କର ନାନାରୂପେ     ପ୍ରହରୀ ସ୍ୱରୂପେ
ଦେଖନ୍ତ ପ୍ରକୃତି ଶୋଭା ନୟନେ ।
ସୁନୀଳ ସାଗର     ପାଇ ଚନ୍ଦ୍ରକର
ଅହ୍ଲାଦେ ଫୁଲଇ     ତେଜେ ଗରଜଇ
ସୁବର୍ଣ୍ଣ ସୁନ୍ଦର ରୂପ ଦର୍ଶନେ ।

୭

ଭାବଇ ଭାବୁକ     ହୋଇ ଜାଗରୂକ
ଏ କି ଚମତ୍କାର     ନୀଳପାରାବାର
ସୁବର୍ଣ୍ଣସ୍ୱରୂପ ରୂପେ ବିରାଜେ ।

୭

କବିତାକଲାପ ।

ନହେ ବା ସାଗର        ସୁବର୍ଣ୍ଣ ଅମ୍ବର
ଭରିଲଛ ଦୋଇ        ଏପରି ଫାଇ
ମେଦିନୀ ଗର୍ଭର ତାପର କାର୍ଯ୍ୟେ ।

୮

ଉନ୍ନତ ସୁନ୍ଦର        ପୋତାଦି ନିକର
ସାଗର ବକ୍ଷରେ        ଗମ୍ଭୀର ସ୍ୱରରେ
ମନ୍ଥି ଜଳଶ୍ରେଣି କରେ ଗମନ ।
ଭାବଇ ଭାବୁକ        ହୋଇଣ ଉନ୍ମୁକ
ଭୂତଳ ଗଗନେ        ସୁମଧୁର ସ୍ୱନେ
ପକ୍ଷୀଚୟ କି ଏ ଉଡ୍ଡୀୟମାନ ।

୯

ଉନ୍ନତ ପର୍ବତ        ତରୁଲତାବୃତ
ତହିଁରୁ ନିର୍ଝର        ବହେ ଝର ଝର
ମର ମର ଶବ୍ଦେ ପୂର୍ଣ୍ଣ ସେ ସ୍ଥଳ ।
କୁସୁମକାନନେ        ସେହି ରମ୍ୟସ୍ଥାନେ
ଈଶ୍ୱର ଭଜନେ        ଋଷିଙ୍କର ମନେ
ଆନନ୍ଦରସ୍ରୋତ ବୁହେ ପ୍ରବଳ ।

୧୦

ବିସ୍ତୀର୍ଣ୍ଣ କାନନ        ତୁଙ୍ଗ ନିକେତନ
ନଗର ପ୍ରଦେଶ        ଅନନ୍ତ ଆକାଶ ;
ସକଳେ ନିବେଶ ଯୋଗ ସାଧନେ ।
ପ୍ରଭୁଙ୍କ କ୍ଷମତା        କରୁଛନ୍ତି ଚିନ୍ତା
ଗମ୍ଭୀର ଭାବରେ        ଉଚ୍ଚ ଉଦ୍ଦେଶ୍ୟରେ
ଭାବୁକ ବିଶ୍ୱରେ ଏ କଥା ମନେ ।

———

## ପଞ୍ଜୁରିବଦ୍ଧ ଶୁକପକ୍ଷୀ ପ୍ରତି ।

୧

କି ହୁଦିଶା ଏବେ ମୋର ପକ୍ଷୀରାଜ,
ଲିବୁଛୁ ଜୀବନେ ଅଉ କିସ କାର୍ଯ୍ୟ;
ଟପଟକ ବାସ୍ପସେ    ସ୍ୱାଧୀନଭାବଶେ
ମନର ହରଷେ    ସବୁ ବାରବେଗେ
ଉଠିଣ ଅକାଶେ କାଟନ୍ତ ଦନ ।
ରୁଦ୍ଧ ପଞ୍ଜୁରିରେ ପଡଅଛୁ !!! ଶୁକ,
ହୋଇଅଛୁ ମୋର ଶୁରୁଭର ଶୋକ,
ମୋର ସୁଖ ରବ    ମୋର ମୁଖ ଛବି
ମଳନତା ଲଭି    ଗଲା ସବୁ ଲଭି
ଦୁଃଖଗ୍ରସ୍ତ ହଣ ଅଛୁ ଅଶନ ।

୨

ସରସୀ ଜୀବନ ପ୍ରଖର ତେଜରେ,
ବିନାଶ ଲଭିଲେ; ସବୁ ଜଳଚରେ,
ପଦ୍ମ କଇଁକୁଳ    ଖିକଲେ ବ୍ୟାକୁଳ
ହୋଇ ଭୂମିତଳ    ପଡ଼ନ୍ତ ଚଞ୍ଚଳ
ହୁଏ ଭାଙ୍କ କଲ ସବୁ ଅନ୍ତର ।
ସେହ୍ର ପଇ ପକ୍ଷି ମୋ ମାନସ ସର,
ଦୁଃଖାନଳେ ଅଛି ଅତ ଶାର୍ଣ୍ଣତର,
ମୋର ମନୋବୃତ୍ତି    ଦୟା, ସ୍ନେହ, ପ୍ରୀତି
ଉତ୍ସାହ, ଉନ୍ନତ,    ଅଶା କଲନାଦୀ
ସକଲ ବିନାଶ ନୁହେ ଗୋଚର ।

୩

କି ଭାବନା ପକ୍ଷି କରୁଅଛୁ ମନେ,
କାନନର ଚନ୍ଦ୍ର ଦେଖୁଁ ତୋ ନୟନେ,
ତଟିନୀ ପୁଳିନେ                ନିବିଡ଼ କାନନେ
ସ୍ୱାଧୀନତା ଜ୍ଞାନେ                ଭ୍ରମି ସ୍ଥାନେ ସ୍ଥାନେ
କଟାଇ ସମସ୍ତ ରହନ୍ତି ସୁଖେ ? ।
ତୋର ଖାଦ୍ୟ ସବୁ ନାନା ଜାତି ଫଳ,
ସୁସ୍ୱାଦୁ କଦଳୀ ସୁପକ୍ୱ ରସାଳ,
ଯାହାଙ୍କୁ ସ୍ପର୍ଶିନ                କଲେ କର ସନ
ତୁଚ୍ଛ ପକ୍ଷୀଗଣ                କରନ୍ତି ଭୋଜନ
ରୁଦ୍ଧ ପଞ୍ଜୁରିରେ ପଡନ୍ତି ଦୁଃଖେ ।

୪

ଦୁରନ୍ତ କଠୋର ଶମନର ସମ,
କୁରୂପ କୁତ୍ସିତ ନିର୍ଦ୍ଦୟ ନିର୍ମମ,
କାକ ପେଚ ଦଲ                ଉଚ୍ଚ ବୃକ୍ଷ ଡାଳ
ହୋଇଣ ସବଳ                କର ମହା ଗୋଳ
ସ୍ୱାର୍ଥବେଗେ ଉଡ଼ୁଛନ୍ତି ଗଗନେ ।
ମୁହୂର୍ତ୍ତିକ କ୍ଷଣେ ରେ ପକ୍ଷିରାଜନ,
ଦେଖନ୍ତେ ଜଗତେ ସର୍ବ ଜୀବଗଣ,
ଥିଲେ ତୋର ବଳ                ଦେଖାନ୍ତି କୌଶଳ
ଆକାଶ ପାତାଳ                ମର୍ତ୍ତ୍ୟ ଭୂମି ସ୍ଥଳ
କର୍ଷାଇ ଦେଅନ୍ତି ଔଷଧ ପାନେ ।

୫

କିନ୍ତୁ ପକ୍ଷି ମୋର ଥିଲେ ବଳ, ବୀର୍ଯ୍ୟ,

ନସ୍ଥମ କରୁଛୁ କରିନ୍ତୁ ସାହାଯ୍ୟ,
ମୋ ପ୍ରାଣପଣରେ     ଦୃଢ଼ ପ୍ରତିଜ୍ଞାରେ
ରକ୍ତ ଉତ୍ସାଗରେ     କଠୋର କାର୍ଯ୍ୟରେ
ସ୍ୱାଧୀନ କରନ୍ତୁ ମୋ କଳେବର ।
କହଁ ପକ୍ଷି ମୋର ଲୋଚନେ ଲୋତକ,
ମୋର ଘରେ ସଦା ରହେ କି ପୁଲକ,
ଯାହା ହେବ ହେବ     ତାହା ଦେଖା ଯିବ
ଭାଗ୍ୟରେ ଯେ ଥିବ     ଅବଶ୍ୟ ଘଟିବ
ଭାବନାରେ କିଆ ନୁହ କାତର ।

୬

ଅରଣ୍ୟସଂଗ୍ରାମୀ ମହାଗଜ କେବେ,
ପଶୁରାଜ ସିଂହ ପୁଣି ପଞ୍ଜରବେ,
ଶୃଙ୍ଖଳେ ବନ୍ଧନ     ହୁଅନ୍ତୁ ଅଧୀନ
ତୁଚ୍ଛ କ୍ଷୁଦ୍ର ଜୀବ     କେତେ ଭଲ ଥିବ
ମୋର ଅଧୀନତା କି ଚମତ୍କାର ।
ତେବେ କିନ୍ତୁ ପକ୍ଷି ଏ କଥା କହିବା,
ସେହି ପାପୀଜନେ ଘୋର ଲଜ୍ଜା ଦେବା,
ଯେଉଁ ପାପୀଜନ     ମହା ମୂଲ୍ୟବାନ
ସ୍ୱାଧୀନତାଧନ     ତୋହର ହରଣ
କଲା, ପ୍ରତିଫଳ ପାଉ ତାହାର ।

୭

ସବୁ ସମୟତ ସମାନ ନ ଯାଏ,
ସଦା କାହା ଦର୍ପ ଜାଗ୍ରତ ନ ଥାଏ,
ପର୍ବତ, ସାଗର     ସିନ୍ଧୁ, ମନ୍ଥର

ଦୁର୍ବଳ, ସବଳ ସବଳ, ନିର୍ବଳ
ହେଉଛି ଦେଖୁଛୁ ନୟନରେ ।
ଅତ୍ ପକ୍ଷୀବଳ ନ କର ତୁ ଚିନ୍ତା,
ଚିନ୍ତା ଯୋଗେ ଦେହ ଲଭିବ କୃଶତା,
ଅଖିଳର ପାତା ସର୍ବଜ୍ଞବିଧାତା
କେ ଜାଣି ବିଧାତା ତୋର ସ୍ୱାଧୀନତା
ପୁନରପି କାଳେ ଯୁଟାଇ ପାରେ ।

---

## ପ୍ରକୃତିର ଶୋଭା ।

୧

ପ୍ରକୃତିର ଶୋଭା କି ଚମତ୍କାର,
ଦେଖିଲେ ଆନନ୍ଦ ହୁଏ ଅପାର,
ପ୍ରକାଣ୍ଡ ଗଗନ କର ବିଲୋକନ
ଅସୀମ ଅନନ୍ତ ଅଟେ ଅମ୍ବର,
ନୀଲ, ପୀତ ବର୍ଣ୍ଣେ ତା କଲେବର,
ଧନ୍ୟ ରଚିଅଛି ଯେ ଚରାଚର ।

୨

ବିପୁଳ ଗଗନେ ସ୍ୱଚ୍ଛନ୍ଦ ଭାବେ,
ଶ୍ରେଣୀବଦ୍ଧ ହୋଇ ସୁସ୍ୱର-ରାବେ,
ପକ୍ଷରେ ଆଘାତ କରି କରି ବାତ
ଯାନ୍ତି ପ୍ରତିଘାତ ବଳପ୍ରଭାବେ,
ପକ୍ଷୀଗଣ କଉତୁକେ ସ୍ୱଭାବେ,
ନ ଆଶ୍ଚର୍ଯ୍ୟ ହୋଇ ମୁଁ ମନେ ଭାବେ ।

୩

ସତେ ପକ୍ଷୀ ସୈନ୍ୟ ଏକତ୍ର ହୋଇ,
ସୁସଜ୍ଜିତ କାହିଁ ସମର ପାଇଁ,
ଗଗନ ମାର୍ଗରେ ତାହାଙ୍କ ଗତ୍ୟରେ
ଅନ୍ଧକାର କରଅଛି କି କେହି
ତାଙ୍କୁ ପରାଭବ ଦେବାକୁ ତହିଁ,
ବୀରବେଶେ ଯାନ୍ତି ଚଞ୍ଚଳ ହୋଇ ।

୪

ବାଲଭାନୁ ରୂପ ବଡ଼ ସୁନ୍ଦର,
ଦେଖି ପ୍ରଫୁଲ୍ଲିତ ପଦ୍ମାକର,
ହେମ ଛତ ବର୍ଣ୍ଣ କଲେ ବିଲୋକନ
ଉଲ୍ଲାସିତ ନୁହେ କାହା ଅନ୍ତର,
ଅନୁପମ ଶୋଭା କି ପଟାନ୍ତର,
ଉଚ୍ଛୁଳେ ଭାବୁକ ଭାବ ସାଗର ।

୫

କ୍ରମେ କ୍ରମେ ଉଠି ଦିବସମଣି,
ପ୍ରଖର ତେଜରେ ଅଗ୍ନି କି ଜିଣି,
ଘୋର ଅନ୍ଧକାର କରନ୍ତି ସଂହାର
ବିଚରଣ ଲୋକେ ଭୂଲୋକପୁଣି,
ଭାସ୍ୱଦ୍ୟ ହୁଏ ମୁଁ ମନରେ ଗୁଣି,
କାହା ସଙ୍ଗ ଏନ୍ତୁ କେ ସେହି ପ୍ରାଣୀ ।

୬

ରଜନୀ ନାୟକ ଉଦୟ ହୋଇ,
କେମନ୍ତ ଅପୂର୍ବ ଶୋଭା ଦିଶଇ

କୁମୁଦନୀମାନେ ସରସୀ ଜୀବନେ
ଆନନ୍ଦେ ହସନ୍ତୁ ମୁଖଫିଟାଇ,
ଶୀତଳ କିରଣ ଯୋଗରେ ମଣ୍ଡି,
କି ଅମୂଲ୍ୟ ସୁଖ ଭୋଗ କରଇ ।

୭

ଉଲ୍ଲାସେ ଫୁଲଇ ପୁଣି ସାଗର,
ନୀଳବର୍ଣ୍ଣରୂପ ସ୍ଥିତ ନାଗର,
ତାର ବର୍ଣ୍ଣ, ହୀନ କରଇ କାଞ୍ଚନ
କେବଳ କାରଣ ସେ ନିଶାକର,
ସେକାଳେ ଦର୍ଶନ କଲେ ସାଗର,
କି ମୋହିତ ନହେ କାହା ଅନ୍ତର ।

୮

ବିପୁଳା ପୃଥିବୀ କର ଲୋକନ,
ଶୋଭାର ଭଣ୍ଡାର ଅଟେ ଏସ୍ଥାନ,
ନୟନପଥେ ଗଲେ ଯେତେ ଦେବ ଗୃନ୍ଥ,
ତେତେ ଲଗ୍ନ ହେବ ତୁମ୍ଭ ଲୋଚନ,
ଲୌହକୁ ଚୁମ୍ବକ ଟାଣେ ଯେସନ,
ଶୋଭା ଆକର୍ଷଇ ନେତ୍ର ତେସନ ।

୯

ପୃଥ୍ୱୀଶିର୍‌ସମ ଉନ୍ନତ ଗିରି,
ତରୁ, ଲତା, ଗୁଳ୍ମ ଯା ଶିରଶିରି,
ତା ନିମ୍ନର ବନ କଲେକ ଲୋକନ,
ଉଦର ପୂରଣେ ଯାଉଛୁ ପରି,
ଭାବୁକ ମନରେ ଏ ଭାବ ଧରି,
ଭାବଇ ଏ ସବୁ କାହା ଚାତୁରି ।

୧୦

ଅରଣ୍ୟ ମଧ୍ୟକୁ ଯେ ଯାଉ ଅଛୁ,
ସେହି ତାର ଶୋଭା କେବେ ଦେଖୁଛୁ,
ପଶୁ ପକ୍ଷିମାନେ ବିହରନ୍ତି ବନେ,
ମର ମର ଶବ୍ଦେ ପତ୍ର ଝଡ଼ୁଛୁ,
ଦେଖିଲେ ଭାବୁକ ମୋହି ହେଉଛୁ,
ଧନ୍ୟ ସେହି କର୍ତ୍ତା ଯେ ତା କରଛୁ ।

୧୧

ପର୍ବତ-ନନ୍ଦନୀ ରମ୍ୟ ତଟିନୀ,
ପଥ ଦରଶନେ ଅନୁଧାବନୀ,
କଳ କଳ ଧ୍ୱନି କରେ ସଦା ପୁଣି
ଆନନ୍ଦିତ ତାହା ସକଳେ ଶୁଣି,
ତୀର ତୀରବର୍ତ୍ତୀ ବୃକ୍ଷ ଶ୍ରେଣୀ,
ତୋଷନ୍ତି ଦର୍ଶକ ନୟନ ବେନି ।

୧୨

ସୁରମ୍ୟ ଉଦ୍ୟାନ ମଧ୍ୟରେ ସର,
ହୋଇଛୁ ଯାହାର ନେତ୍ର ଗୋଚର,
ତାହାର ସେ ଶୋଭା କେଡେ ମନୋଲୋଭା
ଭାବୁଥିବ ସେହି ହୃଦ ମଧ୍ୟର,
କୁମୁଦ କୁସୁମ ପଦ୍ମନିକର,
ପ୍ରସ୍ଫୁଟିତ ବେଳେ କି ଶୋଭାକର ।

୧୩

ସରସୀ ତୀରସ୍ଥ ତରୁଶ୍ରେଣୀର,
ଛାୟା ଜଳେ ପଡ଼ େକେଡେ ସୁନ୍ଦର

ପବନ ହିଲ୍ଲୋଳେ    ତରୁ ଯେବେ ଦୋଳେ
ସ୍ରଇ ତାର ଜଳେ ସେହି ପ୍ରକାର,
ସରସୀ ଦର୍ପଣେ ମୁଖ ନିରେଖି,
ଦେଖୁଅଛନ୍ତି କି ସେ ତରୁବର ।
୧୪

ଅକାଶେ ହୋଇଲେ ଚନ୍ଦ୍ର ଉଦିତ,
ଜଳେ ତାର ରୂପ ପ୍ରତିବିମ୍ବିତ,
କଉତୁକରେ    ଭାବଇ ମନରେ
ଦେଖ ଦେଖ ଅହା କି ଅଚମ୍ବିତ,
ଊର୍ଦ୍ଧ୍ୱଭାଗେ ଚନ୍ଦ୍ର ଅଛି ଶୋଭିତ,
ଜଳେ ଏକ ଚନ୍ଦ୍ର କାହିଁ ସ୍ଥାପିତ ।
୧୫

ତୃଣାବୃତ କ୍ଷେତ୍ର ପ୍ରଭାତକାଳେ,
ମଣ୍ଡିତ ହୋଇଣ ତୁଷାରଜାଳେ,
ମୁକୁତା ନିଚୟ    ଶୋଭାକୁ ବିଳୟ
କରଇ ଚଞ୍ଚଳେ, ମନ ବିହ୍ୱଳେ,
ହେବ କି ଏ ଶୋଭା ମନୁଷ୍ୟ ବଳେ,
ଧନ୍ୟ ଧନ୍ୟ ପ୍ରଭୁ କଳ କୌଶଳେ ।

---

ଆଶା ।

୧

ଧନ୍ୟ ଧନ୍ୟ ଆଶା ମହିମା ତୋର,
ଜଳଖଣ୍ଡୀରେ କିଏ କରବ ସ୍ଥିର,
ତୁ ନ ଥିଲେ ଜୀବ    ମରଣ ଲଭିବ

ଏଥିରେ ସନ୍ଦେହ ଅଛି କାହାର,
ସବୁସ୍ଥଳେ ଅଛି ତୋ ଅଧିକାର,
ତୋହ ସୀମା ହେବ କାହା ଗୋଚର ।

୨

ଶୁଷ୍କଚର୍ମକୃତ ପକ୍ୱ କୁନ୍ତଳ,
ଲୋଳିତ ଯେ ନର ଏ ଧରାତଳ,
ଦେହେ ନାହିଁ ବଳ ହୁଏ ଟଳ ଟଳ
ହସ୍ତ ପଦ, ଅବୟବ ଅଚଳ,
ତଥି ମାୟାମୋହ ତାର ପ୍ରବଳ,
ଆଶା ଦେଖାଉଛି କେତେ କୌଶଳ

୩

ପତି ପରାୟଣା ସତୀ ନାରୀର,
ହୃଦୟବଲ୍ଲଭ ହେଲେ ଅନ୍ତର,
କ୍ଳେଶିତ ଜୀବନ ହୁଏ ତନୁ କ୍ଷୀଣ
ଦୁଃଖମୟ ବୋଧ ହୁଏ ସଂସାର,
ତଥି ଆଶା ବଳବତୀ ତାହାର,
ମାୟାମୋହେ ପଡ଼ି କରଇ ଘର ।

୪

ଜୀବନ ସମାନ ଶିଶୁ ସନ୍ତାନ,
କାଳକବଳରେ ହେଲେ ପତନ,
ପିତା ମାତାଙ୍କର ଛିଡ଼େ ମାୟାଡ଼ୋର
ସଂସାର ଅନିତ୍ୟ ହୁଅଇ ଜ୍ଞାନ,
କିଛିକ୍ଷଣ ପୁଣି ହେଲେ କ୍ଷେପଣ,
ଆଶା ମାୟାମୋହେ କରେ ବନ୍ଧନ ।

୫

ଜନକ ଜନନୀ ନିଜ ନନ୍ଦନ,
କରୁଛନ୍ତି ସଦା କଷ୍ଟେ ପାଳନ,
ରୋଗେ ବ୍ୟାକୁଳିତ        ହେଲେ ତାଙ୍କ ସୁତ
ହୃଦୟ ଫାଟଇ ଶୁଖେ ବଦନ,
ଆରତେ କରନ୍ତି ମହାରୋଦନ,
ରଖନ୍ତି ଔଷଧ ଦେଇ ଜୀବନ ।

୬

ଆଶା ଅଛି ଯେବେ ବୃଦ୍ଧକାଳରେ,
ଅବଶ ହୋଇବେ ନିଜ ବଳରେ,
ସେ କାଳରେ ପୁଣି        ପୁତ୍ର କୁଳମଣି
ପାଳିବ ତାହାଙ୍କୁ ନିଜ ବଳରେ,
ଧନ ହରଇବେ ସୁକୌଶଳରେ,
କୀର୍ତ୍ତି ରଖିଯିବେ ମହୀତଳରେ ।

୭

ଅରଣ୍ୟନିବାସୀ ତପସ୍ୱୀଗଣ,
ବନ ଫଳ ମୂଳ କରଇ ଭକ୍ଷଣ,
ଘୋରଶୀତକାଳେ        ନିଦାଘ ଅନଳେ
ବରଷା ଦିନରେ କଷ୍ଟ ଲଭିଣ,
କରୁଛନ୍ତି ସଦା ଯୋଗସାଧନ,
ଆଶା ଅଛି ସ୍ୱର୍ଗେ ପାଇବେ ସ୍ଥାନ ।

୮

କୃଷିଜୀବୀ କ୍ଷେତ୍ର କରଇ କର୍ଷଣ,
ବହୁ ଯତ୍ନେ କରେ ବୀଜରୋପଣ,

କ୍ଷେତ ଭଲ ହେଲେ ଶସ୍ୟ ଲାଭ କଲେ
କୁଟୁମ୍ବ କରିବ ପ୍ରତିପାଳନ,
ସୁଖରେ କାଟିବ ସକଳ ଦିନ,
ସଦା ଏହି ଘୃଣା ହୃଦେ ସ୍ମରଣ ।

୯

ସୁକୁମାରମତି ବାଳକଗଣ ,
କରୁଛନ୍ତି ସଦା ବିଦ୍ୟାପଠନ,
ଘୃଣା ବଳବତୀ ହେଲେ ଜ୍ଞାନୋନ୍ନତ,
ଲଭିବେ ସୁଖ୍ୟାତ ପଦ ସମ୍ମାନ,
ବଢିବ ଗୌରବ ଦିନକୁ ଦିନ,
ଶୁକ୍ଲପକ୍ଷେ ଯେହ୍ନେ ବିଧୁବର୍ଦ୍ଧନ ।

୧୦

ଘୃଣାବଦ୍ଧ ହୋଇ କେତେ ବଣିକ,
ଲର୍ଦ୍ଧି ମହା ମହା ପ୍ରତିବନ୍ଧକ,
ଅଗ୍ନି କ୍ଷେଣାବୃତ ତୁଷାର ମଣ୍ଡିତ
ଋଷିଆ, ଇଙ୍ଗ୍ଲଣ୍ଡ, ଚୀନ, ତୁରଷ୍କ,
ବୁଲୁଛନ୍ତି ସଦା ଅବନୀଯାକ,
ଘୃଣା ଅଛି ଯନେ କଢ଼ିବ ଟେକ ।

୧୧

ଦାସତ୍ୱ କରିବା ଯାହାର ମନ,
ସ୍ୱାମିଙ୍କ କହେ ସେ ବିନ୍ଧୁବଚନ,
ସ୍ୱାମୀ ଅବା କେବେ ପ୍ରସନ୍ନ ହୋଇବେ
କରିବେ ବା ଉଚ୍ଚପଦପ୍ରଦାନ,

ଘୃଣାବନ୍ତ ହୋଇ ସେ ମୂର୍ଖଜନ,
ପ୍ରାଣପଣେ କରେ ଅନୁସରଣ ।

୧୨

ସତ୍ୟ ଶିଳ୍ପେତର ଗୁଣୀଜନର,
ଭୋଜନ ଶୟନେ ନାହିଁ ଆଦର,
ଆଶା ବଳବତୀ ଲଭିବେ ସୁଖ୍ୟାତି
ହୋଇଲେ ଜଗତେ ସତ୍ୟ ପ୍ରଚୁର,
ରଜନୀ ଦିବସେ ଚିନ୍ତା ଅପାର,
ଖୋଜନ୍ତି କାରଣ ପ୍ରତିକାର୍ଯ୍ୟର ।

୧୩

ଘଟଣାଯୋଗେ ପର୍ତ୍ତୁଗିଜଗଣ,
ଭାରତବର୍ଷକୁ ପଥଦର୍ଶନ—
କରି ଆନନ୍ଦିତ ହେଲେ ପୁଲକିତ
ଭାରତେ କରିବେ ଧନଅର୍ଜନ,
ଆଫ୍ରିକା ଦକ୍ଷିଣଭାଗର ସ୍ଥାନ,
କଲେ "ଉତ୍ତମାଶା" ନାମ ପ୍ରଦାନ ।

୧୪

ଘଟଣାଯୋଗେ "କଲମ୍ବସ" ନାବିକ ।
ଚଳାଇଲେ ପୋତ ସାଗରଯାକ,
ଦେଖି ଆମେରିକା ଉଡାଇ ପତାକା
ଫେରିଲେ ଏ ଦେଶେ ସେ ସାହସିକ ,
ଆମେରିକା ଦେଶ ଜାଣିଲେ ଲୋକ,
ପଛେ ପୁଣି ଗଲେ କେତେ ବଣିକ ।

୧୫

ପ୍ରବଳପ୍ରତାପୀ ରଣନିପୁଣ,
ବୀର ସିକନ୍ଦର ରିପୁଦଳନ,
କରି ଘୋରଯୁଦ୍ଧ କେତେ ଜନପଦ
ଲଭିଲେ ବହୁତ ନୃପଆସନ,
ନୋହିଲା ତାଙ୍କର ଆଶା ପୂରଣ,
ସିନ୍ଧୁତୀରେ କଲେ ବସି ରୋଦନ ।

୧୬

ଆଶାବଶ ହୋଇ ଯବନଗଣ,
କଲେ ଭାରତରେ ପଦକ୍ଷେପଣ,
ଅମୂଲ୍ୟ ଭାରତ କରି କରଗତ
ପାଇଲେ ବହୁତ ମଣି କାଞ୍ଚନ,
ତଥାପି ନୋହିଲା ଆଶାପୂରଣ,
ଭାଙ୍ଗିଲେ ଅନେକ ଦେବଭବନ ।

୧୭

ଆଶାରେ ଉନ୍ମାଦୀ କ୍ଲାଇବ ବୀର,
ପଲାଶୀ ପ୍ରାଙ୍ଗଣେ କଲେ ସମର,
କମ୍ପାଇଲେ ଦେଶ ଦେଖାଇଲେ ତ୍ରାସ
ସିରାଜ ସୈନ୍ୟଙ୍କୁ କଲେକ ଦୂର,
ବଙ୍ଗେ ଉଡ଼ାଇଲେ ଧ୍ୱଜା ନିଜର,
ରଖିଲେ ଗୌରବ ଇଂରାଜଙ୍କର ।

୧୮

ବାମା ଲକ୍ଷ୍ମୀବାଈ ଝାନସି ରାଣୀ,
ଅମୂଲ୍ୟ ସ୍ୱାଧୀନ ରତନକୁ ଜାଣି,

ମନେ ମନେ ଗୁଣି          କହିଲା ତରୁଣୀ
ଅନ୍ୟ କିଏ ନେବ ମୋର୍ ହୃଦ୍ୟ ପୁଣି,
ଅଶାଯୋଗେ ଯୁଦ୍ଧ କଲା କାମିନୀ,
ତା ଯଶ ଘୋଷୁଛି ଏବେ ମେଦିନୀ ।

---

## ସ୍ୱଦେଶ ।

ସ୍ୱଦେଶ କେମନ୍ତ          ଅଟେ ମନୋମତ
କେ କହିବ ତା ବିସ୍ତର ।
ସ୍ୱଦେଶର ଶୋଭା          କେଡ଼େ ମନୋଲୋଭା
ତା ପାଁଇ କେ ନୋହେ ଧାଉ ।
ଦେଶ ତରୁବର          ନଦୀ ସରୋବର
ସମସ୍ତେ ଯେ ମନୋହର ।
ଯେତେ ପଶୁପକ୍ଷୀ          ଦେଖିବ ନିରେଖି
ସକଲେ ଗୁଣ ଅକର ।
ସ୍ୱଦେଶର କୀର୍ତ୍ତି          ମନୋହର ମୂର୍ତ୍ତି
ଦେଖି ଚିତ୍ତ ଫୁଲଯାଏ ।
ସ୍ୱଦେଶୀୟ ଗଙ୍ଗା          ସ୍ୱଦେଶୀୟ ପ୍ରଜା
ଦେଖି ତୋଷ କେ ନ ପାଏ ।
ସ୍ୱଦେଶ ଚଳଣି          ଅତି ଭଲ ମଣି
ଚଳନ୍ତି ସମସ୍ତ ଜନେ ।
ସ୍ୱଦେଶୀୟ ପ୍ରଥା          କରନ୍ତି ଅନ୍ୟଥା
ଦୋଷ ବାଛୁ କିର ମନେ ।
ସ୍ୱଦେଶେ କି ସ୍ନେହ          ନ ଦେଖିଲେ ଲୁହ
ନୟନୁ ହୁଏ ବାହାର ।

ଛନ ଛନ ମନ ଅତି ଉଚାଟନ
ଯାଉଣ ଚୁମ୍ବକ ପ୍ରକାର ।
ଛାଡ଼ି ଘର ଦ୍ୱାର ପୁଣ ପରବାର
ବିଦେଶେ ଯେଉଁ ରହିବ ।
ସ୍ୱଦେଶୀୟ ମୁଖ ଦେଖି କେଡ଼େ ସୁଖ
ସେ ଅନୁଭବ କରିବ ।
ସ୍ୱଦେଶ ଉନ୍ନତି ପ୍ରଥମରେ ଚିନ୍ତି
ବିଦେଶ ଯେ ତାହା ପର ।
ଏହି ନିୟମରେ ବଡ଼ ହୁଅ ବାରେ
ବଙ୍କ, ଗ୍ରିକା, ଧନେଶ୍ୱର ।
ଆହେ ଭ୍ରାତୃଗଣ ଶୁଣ ମୋ ବଚନ
ହୁଅ ବିଦ୍ୟାପାରଗର ।
ପ୍ରତ୍ୟେକରେ ଚାହିଁ କରିବା ସ୍ୱଦେଶ
ମୁଖକୁ ଉଜ୍ୱଳତର ।
ସ୍ୱଜାତି ଉନ୍ନତି ଚିନ୍ତ ଦିନ ରାତି
ସାଧନେ ହୁଅ ତତ୍ପର ।
ସ୍ୱଦେଶ ଗୌରବ କରି ଅନୁଭବ
ଜନମ ସାର୍ଥକ କର ।
ସ୍ୱଦେଶ ପ୍ରେମରେ ମୁଗ୍ଧ ହୋଇବାରେ
ଥିରେ କି ନ କରିଛନ୍ତି ।
ପଢ଼ି ଇତିହାସ ନ କର ସାହସ
ଦେଖି ଜଳଲର ଗାତ ।
ଓଡ଼ିଶା ମୋହର ମାତୃ ସ୍ୱର୍ଗପୁର
ନ ଗଣଇଁ ମୁହିଁ ଆନ ।

ଅତି ମନୋହର　　ଜନପଦେଶର
ଥିଲେ ମଧ୍ୟ ବହୁସ୍ଥାନ ।
ସ୍ୱଦେଶୀୟ ଜନ　　ବଦନ ଲୋକନ
କର ପ୍ରେମାମୃତ ପାନ ।
ସୁଖେ ହେବ ବଡ　　ରହିବ ସ୍ୱାଧୀନ
ଏହି କାମନା ପ୍ରଧାନ ।
ଓଡିଶା ଭାବନା　　ଉନ୍ନତି କାମନା
ହୁଏ ମୋର ନିରନ୍ତର ।
ଜଗତକାରଣ　　ପତିତପାବନ
ଉତ୍କଳର ଦୁଃଖ ହର ।
ନାନା ଶସ୍ୟ ହେଉ　　ସୁଖେ ଧନ ଯାଉ
ରହନ୍ତୁ ମୋ ଭାଇଗଣେ ।
ନାନା ଗ୍ରନ୍ଥ ପଢି　　ହୁଅନ୍ତୁ ସଜ୍ଞାତ
ଦେଖନ୍ତୁ ଜଗତଜନେ ।
ବହୁତ ବାଣିଜ୍ୟ　　ହେଉ ଏହି ରାଜ୍ୟ
ଧନରେ ଅଳକା ସମ ।
ମହା ବୀର ଶୂର　　ହୁଅନ୍ତୁ ବାହାର
ଯେସନେ ଭୀମ ପରାକ୍ରମ ।
ତାକୁ କରିବାକୁ　　ଉଡୁଥାଉ ଧ୍ୱଜା
ଚିରକାଳ ଉତ୍କଳକୁ ।
ଜଗତରେ ଅଦର୍ଶ　　ହେଉ ଏହି ଦେଶ
ଅନ୍ୟ ଅନ୍ୟ ଜାତିଙ୍କର ।

## ଦ୍ୱୀପାନ୍ତରିତ ବ୍ୟକ୍ତିର ଖେଦ ।

୧

ଅଛି କି ଅମୂଲ୍ୟ ଧନ ଦୁଃଖିର ରତନ
ସୁଧାଂଶୁବଦନି ଶିଶୁ ହେବ ବିଲୋକନ
କରିବି ମୁଁ ଆଲିଙ୍ଗନ   ସ୍ନେହେ ଦେବି ଚୁମ୍ବଦାନ
ତା କୋମଳ ଗଣ୍ଡସ୍ଥଳେ, ଏତ ସ୍ୱର୍ଗସ୍ଥାନ
ଏ ଜୀବନେ ଘଟିବ କି ତଗଁତଜୀବନ
ତାପିତ ପ୍ରାଣ ଶୀତଳ କରିବ ଏ ଦୀନ ।

୨

ଆହା ମୋ ପ୍ରେୟସୀ ବାଳା ଲୋଟି ଭୂମିତଳେ
ମୋ ଧରଣେ ଦେଇଥିବ କରକୁ କପାଳେ
ନୟନୁ ଲୋତକଧାର   ବହୁଥିବ ବାରମ୍ବାର
ଡାକୁଥିବ "ଦୀନନାଥ" ! ଦୁଃଖ ଅସମ୍ଭାଳେ
ଲଭିଅ ଜୀବନଦୀପ ମୋହର ଚଞ୍ଚଳେ
ଦୁଃଖିନୀ କ୍ଳେଶ ନ ପାଉ ଏ ଘଣ୍ଟାମଣ୍ଡଳେ ।

୩

ଆହା ମୋ ପ୍ରାଣଦାୟିନୀ ଦୁଃଖିନୀ ଜନନୀ
ମୋହପାଇଁ ଝୁରୁଥିବେ ଦିବସ ରଜନୀ ।
କାହିଁ ଗଲା ପୁତ୍ର ମୋର   ଏ ପୁର କରି ଅନ୍ଧାର
ଏହି କଥା ରଟୁଥିବେ ହୋଇ ବାଉଳାନୀ
ମଳିନବସନୀ ଆହା ମଳିନବଦନୀ
ମତେ ଦେଖି ହେବେ ସତେ ଆନନ୍ଦବର୍ଷିଣୀ ।

୪

ଆହା ମୋର ଭୁବଜାତ ଥିବେ ଶଯ୍ୟାଗତ,

ଅନ୍ତରରେ ବହୁଥିବ ନିଶ୍ୱାସ ନିସୃତ
ଡାକୁଥିବେ ଆର୍ତ୍ତସ୍ୱରେ ପ୍ରଭୁ ଶ୍ରୀ ଜଗଦୀଶ୍ୱରେ
ମାଗୁଥିବେ ମୋ ପୁତ୍ରକୁ ଦିଅ ହେ ତୁରିତ
ଏମନ୍ତ ସମୟେ ମୁଁ କି ହେବି ତହିଁ ସ୍ଥିତ
କୋଳାନ୍ତର କରି ସେହୁ ହେବେ ଆନନ୍ଦିତ ।

୫

ମୋ ଜୀବନ ଧନ ସବୁ ମୋର ବନ୍ଧୁଗଣ
ମୋ ବିହୁନେ ହେଉଥିବ ତାଙ୍କ ମନ ଛନ
ପଢୁଥିବ ମୋର କଥା ହୃଦେ ଲଭୁଥିବେ ବ୍ୟଥା
ଈଶ୍ୱରଙ୍କୁ କରୁଥିବେ ମୋର ନିବେଦନ
ଏମନ୍ତ ସମୟେ ତହିଁ କରି ଆଗମନ
ହରିବି କି ସେହୁ ବ୍ୟଥା ଦେଇଣ ଦର୍ଶନ ।

୬

ସାଇ ପଡୋଶୀ ଆଦି ଯେ ଗ୍ରାମବାସୀଗଣ
ଯେତେ କରୁଥିଲେ ମତେ ସ୍ନେହେ ଦରଶନ
ଦଳ ଦଳ ହୋଇ ବସି ଭାବୁଥିବେ ଦିବା ନିଶି
ଏ ମନ୍ଦଭାଗ୍ୟର ହେଲା କି ଦୁଃଖ ଘଟଣ
ହେବ କି ଏ ଜନ୍ମେ ତାର ପୁଣି ଉଦ୍ଧାରଣ
ମତେ ଦେଖି ଅଚମ୍ଭିତ ହେବେ ସେ ତକ୍ଷଣ ।

୭

ଗ୍ରାମଉପବନେ ଆଉ କରିବି ଭ୍ରମଣ
ମନ୍ଦମନ୍ଦ ବହୁଥିବ ଶୀତସମୀରଣ
ନାନାପୁଷ୍ପମକରନ୍ଦ ଘ୍ରାଣେ ଦେଉଥିବ ଗନ୍ଧ
ଝରଝର ଶବ୍ଦ କର୍ଣ୍ଣେ ହୋଇବ ଶ୍ରବଣ

ଗୁଣୁଗୁଣୁ ଗାଉଥିବେ ମଧୁକରଗଣ
ଲତା ଗୁଳ୍ମ ହୋଇଥିବେ ନୟନ ରଞ୍ଜନ ।

୮

ସମୁଦ୍ରବାହିନୀ ଅହା ଗ୍ରାମର ତଟିନୀ
କଳକଳ ଯାର ଜଳ ସଦା କରେ ଧ୍ୱନି
କର୍ଣ୍ଣପଥେ ଯାଏ "ତନ୍ତ୍ରୀ" ବଜାଇ ନୂପୁର ଧର ।
ତାର ତୀରେ ସ୍ତୁଗ୍‌ବଲୀ ଅହା କି ଗଠନୀ ।
ଭାବୁକଜନର ମନ ନିଏ ଯେହୁ କିଣି
ପୁତ୍ର କି ଦେଖିବେ ତାହା ମୋ ନୟନବେନି ।

୯

ଗ୍ରାମର ନିକଟବର୍ତ୍ତୀ ଉନ୍ନତପର୍ବତ
କରନ୍ତି ସତେ ଗଗନ ଯେହ୍ନେ ଦ୍ୱିଖଣ୍ଡିତ
ତରୁଗୁଚ୍ଛରେ ଶିଖର ଅଟେ ଅତି ମନୋହର
ଅନୁପମ ଶୋଭାଶ୍ରୀ ଯା ଦେହେ ମଣ୍ଡିତ
ଯହିଁ ଜାତ ନିର୍ଝର, ହ୍ରଦ, ସରସୀ, ସରିତ
ପୁତ୍ର କି ଏ ଜନ୍ମେ ତାହା ହେବ ବିଲୋକିତ ।

୧୦

ସ୍ୱଦେଶର ରାଜଧାନୀ ମର୍ତ୍ତ୍ୟେ ଅତୁଳିତ
ଅଳକାପୁରୀ ଯାହାକୁ ଅଟେ ପରାଜିତ
ମଣି ମାଣିକ୍ୟ ଖଚିତ ଅନ୍ତରେ ଐଶ୍ୱର୍ଯ୍ୟାକର
ଅପୂର୍ବ ସୁନ୍ଦର ସୌଧମାଳା ବିରାଜିତ
ବୀର, ରାଜା, ଧନୀ, ମାନୀ ପଣ୍ଡିତେ ପୂରିତ
ଏ ହୀନ ଲୋଚନ ତହିଁ ହେବ କି ପତିତ ।

୧୧

ମୋ ବିନତି ଶୁଣ ଶୁଣହେ ନୀଳରତ୍ନାକର
ପୃଥିବୀର ଚତୁଃପାର୍ଶ୍ୱେ ପ୍ରବେଶ ତୁମ୍ଭର
ତବଯୋଗେ ନରଗଣ    ପାଉଛନ୍ତି ବହୁ ଧନ
ଦେଶର ସଭ୍ୟତା ବୃଦ୍ଧି ହୁଏ ନିରନ୍ତର
ଥରେ ମାତ୍ର ଏ ଦୁଃଖିଙ୍କି ତୁମ୍ଭେ ଦୟା କର
ନିଜପଦେ ଉପକୂଳେ ନେଇଣ ଉଦ୍ଧର ।

୧୨

ମୋର ନିବେଦନ ବାରେ ଶୁଣ ସମୀରଣ
ଜଗତପ୍ରାଣ ନାମକୁ କରିଛ ଧାରଣ
ଏ ଦୁଃଖୀର ରଖ ପ୍ରାଣ    ହେବ ତବ ଯଶ ମାନ
ଉଡ଼ାଇ ଆକାଶପଥେ ନିଅ ହେ ବହନ
ପର୍ବତ ଉଠାଅ ତୁମ୍ଭେ ଅତି ବଳବାନ
ଏ ନୁହେ କଠିନ ହେବ ସହଜେ ସାଧନ ।

୧୩

ଅହେ ଦିନକର ମୋର ଶୁଣ ନିବେଦନ
ଏହି ନିଶ୍ରୟଠାରେ ପକାଅ ନୟନ
କେତେ ଜଳରାଶି ନିତି    କରୁଛ ଆକାଶେ ସ୍ଥିତି
ସମୁଦ୍ର ସରିତ ସର କରିଣ ଶୋଷଣ
ମତେ ଦେଖି ଟେକି ଥରେ ଉଠାଅ ଗଗନ ।
ପବନ ସାହାଯ୍ୟେ ହେବ ମୋ ଗୃହଗମନ ।

୧୪

ଲକ୍ଷ୍ମୀକାନ୍ତଙ୍କ ଆଶା ଯୋଗୁଁ କରେ ମ ବିନତି
ଏ ସବୁ ଜଡ଼ପଦାର୍ଥି କି ତାଙ୍କ ଶକତି

ଯେହୁ ନିତ୍ୟ ନିରାକାର  ଯେ ଅନ୍ତର୍ଯ୍ୟାମୀ ଠାକୁର
ସନାତନ ନିରଞ୍ଜନ ଅଖିଳର ପତି
ଯେବେ ଦୟାଳୁ ବନ୍ଧୁ ମୋତେ ଦେବେ ସେ ମତି
ତେବେତ ପାରି ହୋଇବି ଏ ନୀଳାମ୍ବୁପତି ।

---

## ପୁରୁଷୋତ୍ତମର କେତେକ ଦୃଶ୍ୟ ।

ଆସ ଆସ ଦର୍ଶକ ଉଲ୍ଲାସ ହୋଇ,
କେତେ ଶୋଭା ଦେଖିବ ମନ ପୂରାଇ ।
ଦେଖ ସୁରମ୍ୟ ସର ଗୃହେ ଏଠାରେ,
ନରେନ୍ଦ୍ର ନାମ ଯାର ଅଛି ମହୀରେ ।
କେଡେ ପ୍ରଶସ୍ତ ଏହି ସୁମନୋହର,
ଦେଖି ଉଲ୍ଲାସ ହୁଏ ହୃଦୟାଗାର ।
ଚାରି ପାଶେ ସୋପାନ ଶିଳାଗ୍ରଥିତ,
ନିବିଡ଼ ପ୍ରାଚୀରରେ ଅଛି ବେଷ୍ଟିତ ।
ସରସୀ ଜଳେ ରାଜହଂସମାନଙ୍କର,
ସନ୍ତରଣ କରନ୍ତି କି ପଟାନ୍ତର ।
ପୁଣି ଦର୍ଶକ ଦେଖ ଚାରି ପାଶରେ,
ଅସଂଖ୍ୟ ଯାତ୍ରିଗଣ ଉଲ୍ଲାସଭରେ ।
କରୁଅଛନ୍ତି କେତେ ଗାତ୍ର ମାର୍ଜ୍ଜନ,
କେବା ତର୍ପଣ ଯୋଗଧ୍ୟାନେ ମଗନ ।
ଚାଲ ଦର୍ଶକ ପୁଣି ଏ ସ୍ଥାନ ଛାଡ଼ି,
ବିସ୍ତୀର୍ଣ୍ଣ ବଡ଼ଦାଣ୍ଡ ପଥକୁ ମାଡ଼ି ।
ସମ୍ମୁଖେ ଦେଖ ଅନାଥଙ୍କ ସଦନ,
ଈଶ୍ୱର ଆଜ୍ଞା ଧରି କାଟନ୍ତି ଦିନ ।

ଧନ୍ୟ ଈଶ୍ୱରଙ୍କର କିବା ମହିମା,
ଜୀବରେ ତାଙ୍କ ଦୟା କେ କରେ ସୀମା ।
ସମ୍ମୁଖେ ଦେଖୁଅଛ ଯେଉଁ ସଦନ
ଏ ଅଟେ ମୁକ୍ତେଶ୍ୱରଙ୍କର ଭବନ ।
ଗଜପତିଙ୍କ ଧ୍ୱଜା ମହୀତଳରେ,
ଉଡ୍ଡୀୟମାନ ହେଉଥିଲା କାଳରେ ।
ସେ ଏବେ ଯେଉଁଶିର୍ଷ ସଙ୍ଗେ ସମାନ,
କାଳ ବେଳର ଖେଳ କେ କରେ ଆନ ।
ଚାଲ ଚାଲ ଦର୍ଶକ ତ୍ୟଜ ଏ ସ୍ଥାନ,
ଦେଖ ଅରୁଣସ୍ତମ୍ଭ ଦଣ୍ଡାୟମାନ ।
କେମନ୍ତ ସ୍ଥୂଳ ଏହା କି ଉଚ୍ଚତର,
ବୋଲନ୍ତି ଲୋକେ ସବୁ ଗଣ୍ଡେ ପ୍ରସ୍ତର ।
କ୍ରମେ ଏ ସିଂହଦ୍ୱାର ଦେଖ ଦର୍ଶକ,
କେଡ଼େ ଉନ୍ନତ ଏହା ଦେଖିଲେ ଦକ ।
ଭିତରେ ଦେଖ ଅସି ବଡ଼ ଦେଉଳ,
ଅତି ଉନ୍ନତ ପୁଣି କେଡ଼େ ସୁବଳ ।
ପୂର୍ବକାଳରେ ରାଜା "ଅନଙ୍ଗଭୀମ",
କରି ଅଛନ୍ତି କୀର୍ତ୍ତି ଏ ଅନୁପମ ।
ଏଥିରୁ ଜଣାଯାଏ ଉତ୍କଳ ଲୋକ,
ଶିଳ୍ପନୈପୁଣ୍ୟେ ଥିଲେ କେଡ଼େ ବିବେକ ।
ଚତୁର୍ଦ୍ଦିଗରେ ଦେଖ ଅସଂଖ୍ୟ ଜନ,
କରନ୍ତି ସୁଚ୍ଛେ ମିଶି ଅନ୍ନଭୋଜନ ।
ଜାତିଭେଦ ସଂସ୍କାର ନାହିଁ ଏଠାରେ,
ଶୂଦ୍ର ଛୁଇଁଲେ ଦ୍ୱିଜ ଭୋଜନ କରେ ।

ଧନ୍ୟ ଧନ୍ୟ ଏ ପ୍ରଥା ପ୍ରଶଂସନୀୟ,
ଯେ ଏହା ଚଳାଇଛନ୍ତି ସେ ମାନନୀୟ ।
ସେ ଲୋକ ଧର୍ମିଷ୍ଠ ଜାଣନ୍ତୁ କେହି,
ମୁଁ ଜାଣେ ସେହି ସତ୍ୟଧର୍ମୀ ଅଟଇ ।
ନୋହିଲେ ଏ ଉନ୍ନତ ଭାବ ତାଙ୍କର,
ହୋଇ ନ ଥାନ୍ତା କେବେ ହୃଦମଧ୍ୟର ।
କେଡ଼େ ସୁନ୍ଦର ସ୍ଥାନ ଜଗମୋହନ,
ଚତୁର୍ଦ୍ଦିଗରେ ବସି ଭକ୍ତଗଣ ।
ଈଶ୍ୱରସ୍ତୁତିପାଠମାନ ପଢ଼ନ୍ତି,
ଦଣ୍ଡ ପ୍ରଣାମକରି ଭକ୍ତଁ ଚଳନ୍ତି ।
ଅହା ତାଙ୍କର ଅଟେ କେଡ଼େ ବିଶ୍ୱାସ,
ଦେଖି ମନେ ଅଶେଷ ମୋର ସନ୍ତୋଷ ।
ଅସ ଦର୍ଶିକ ଦେଖ ସ୍ନାନମଣ୍ଡପ—
ଉପରେ ରହି ସିନ୍ଧୁଶୋଭାକଳାପ ।
ଘୋର ଗର୍ଜନେ ସିନ୍ଧୁଜଳ ଉଠୁଚି,
ଜଗନ୍ନାଥଙ୍କୁ ଅବା ଉଚ୍ଚେ ଡାକୁଛି ।
ତରଙ୍ଗମାଳସବୁ କି ଶୋଭା ଧରୁ,
ନାଚି ଖେଳ ଅସନ୍ତି ଉପର୍ଯ୍ୟୁପରି ।
ଦେଖି ତରଙ୍ଗମାଳ ମନେ ହେଉଛି,
ସକୁଟୁମ୍ବେ ବାସୁକି ଅବା ଘୁଷୁଛି ।
ବାଳକରେ ଖେଳନ୍ତି ଖେଳ ଯେସନ,
ଜଳଚରଙ୍କ ଖେଳ ଅଟେ ତେସନ ।
ସାଗରଗର୍ଭୁଁ ଜଳ-କଣା ପବନ,
ଆଣି ଲୋକଙ୍କ ଦେହେ କରେ ଲେପନ ।

ଦେଖି ଏ ଅନୁପମ ଶୋଭାର୍ଣ୍ଣବରାଶି,
ହୃଦସାଗରୁ ଉଠେ ଭାବଲହରୀ ।
ଧନ୍ୟ ଧନ୍ୟ ସେ କର୍ତ୍ତା ଏ ଶୋଭାସୃଷ୍ଟି,
କରଅଛନ୍ତି ପ୍ରଭୁ ବୈକୁଣ୍ଠବାସୀ ।

---

## ଇନ୍ଦୁମତୀ ସ୍ୱୟମ୍ବର ( ରଘୁବଂଶ )

୧

ଯଶସ୍ୱୀ ପଣ୍ଡିତ ମହୀଭୂଷଣ
ବିଦର୍ଭାଧିପତି ଭୋଜରାଜନ
ସ୍ୱସା ଇନ୍ଦୁମତୀ ହେଲେଣି ଯୁବତୀ
ଜାଣି ସ୍ୱୟମ୍ବର କଲେ ବିଧାନ
ସଭାସ୍ଥଳ ହେଲା ଅତି ଶୋଭନ
ମଞ୍ଚରେ ବସିଲେ ନୃପେନ୍ଦ୍ରଗଣ ।

୨

ବାଜିଲା ଶୁଭସୂଚକ ବାଦନ
କମ୍ପିଲା ଶବଦେ ନୃପଭବନ
ଜଗତମୋହିନୀ ଭୋଜଙ୍କ ଭଗିନୀ
ହେଲେ ନାନା ଅଲଙ୍କାରେ ମଣ୍ଡନ,
ସଙ୍ଗରେ ସୁନନ୍ଦା ତାଙ୍କୁ ଘେନିଣ
ସଭାମନ୍ଦିରକୁ କଲା ଗମନ ।

୩

ଅନୁପମରୂପଲାବଣ୍ୟବତୀ
ଦେଖି ସେ ବାଳାଙ୍କୁ ସବୁ ନୃପତି
ନେତ୍ରନିମେଷଶୂନ୍ୟରେ ଏକମନରେ

ଗୃହିଁଲେ ହୋଇଲା ଚଞ୍ଚଳମତି
କେବଳ ଅସନେ ଶରୀରସ୍ଥିତ
ମନ ନେଇ କଲେ ତହିଁ ବସତି ।

୪

କାହିଁଠେ କଲେ କେ କର ନିବେଶ
ରଖିଲେ କେ ଯଥାସ୍ଥାନରେ ବାସ
ନୃପନନ୍ଦନର          ଭୁଜଭଙ୍ଗକର
ଯଦ୍ୟପି ହୋଇବ ଅମୃତ ବେଶ ;
ବ୍ୟର୍ଥ ହେବ ଏ ସକଳ ପ୍ରୟାସ
ବୃଥା ହେବ କନ୍ୟା ଲଭିବା ଆଶ ।

୫

କେତେ ନୃପସୁତ ଭାବରେ ପୁଣି
ନୟନଭଙ୍ଗୀ କୋମଳଚାହାଣି
ବହୁତ ବିଳାସ          କଲେକ ପ୍ରକାଶ
ଲଭିବା ଆଶାରେ ରାଜନନ୍ଦିନୀ
କନ୍ୟାଙ୍କୁ ସୁନନ୍ଦା ପ୍ରତିହାରଣୀ
ସମ୍ବୋଧି କହିଲା ମଧୁରବାଣୀ ।

୬

ଏହି ମହୀପାଳ ମଗଧେଶ୍ୱର
ପୁଷ୍ପପୁର ରାଜଧାନୀ ଯାଙ୍କର
ଦିଷ୍ଟା "ପରନ୍ତପ"          ପ୍ରକାଶି ପ୍ରତାପ
ସାର୍ଥ କରିଛନ୍ତି ନାମ ନିଜର
ପ୍ରଜାଙ୍କ ପାଳନେ ଅତି ତତ୍ପର
ଦୈବକାର୍ଯ୍ୟେ ରତ ଏ ନୃପବର ।

୭

ଗଗନମଣ୍ଡଳେ ତାରକାପନ୍ତି
ଥାଇ ପ୍ରୟୋଜନ ତାହିଁ ନୁହନ୍ତି
ଏକା ନିଶାପତି ହେତୁ "ଜ୍ୟୋତିଷ୍ମତୀ"
ଯେସନେ ରାତ୍ରିକି ଲୋକେ ବୋଲନ୍ତି
ମେଦିନୀବକ୍ଷରେ ବହୁ ନୃପତି
ପରନ୍ତପ ହେଁତୁ ଏ "ରାଜନ୍ୱତୀ" ।

୮

ଯେବେ ମନୋନୀତ କର ସୁନ୍ଦରି
ନାଥ ପତିପଦେ ଏହାଙ୍କୁ ବରି
ନନ୍ଦନୀ ରହିଁଲେ   କିଛୁ ନ କହିଲେ
ଗଲେ ଭାବଶୂନ୍ୟ ପ୍ରଣାମ କରି
ସକଳେ ମଣିଲେ ରାଜକୁମାରୀ
ଗଣନା ନ କରି ଅଇଲେ ଫେରି ।

୯

ସରସୀଲହରୀ ରାଜହଂସିକୁ
ଏକପଦ୍ମଠାରୁ ଅନ୍ୟପଦ୍ମକୁ
ନିଅଇ ଯେସନ   ସୁନନ୍ଦା ତେସନ
ନେଲା ସେ ରୂପସୀ ରାଜବାଳାକୁ
ଅନ୍ୟନରପତିସନ୍ନିଧାନକୁ
ଦେଲା ତାହାଙ୍କର ପରିଚୟକୁ ।

୧୦

ଅଙ୍ଗଦେଶପତି ଏ ମହାଶୟ
ଏହାଙ୍କ ଐଶ୍ୱର୍ଯ୍ୟ ଅକଥନୀୟ

ସୁରନାରୀଗଣ          ଯୌବନ ଲୋଚନ
କଲେ ତାହାଙ୍କର ମୋହ ଉଦୟ
ଲକ୍ଷ୍ମୀ, ସରସ୍ୱତୀ ଦୁହିଁଙ୍କ ପ୍ରାପ୍ୟ
ବର; ଏହାଙ୍କର ହୁଅ ହୃଦୟ ।

୧୧

ସୁନନ୍ଦାବଚନ ଶୁଣିଲେ କନ୍ୟେ
ଗଲ ବୋଲି ଠାରି ଦେଲେ ନୟନେ
ଅଙ୍ଗଦେଶେଶ୍ୱର          ଅପୂର୍ବ ସୁନ୍ଦର
କି କବ ଉଦଲ ନନ୍ଦନୀମନେ
କମ୍ପଣ ହୋଇଲେ ତାଙ୍କ ଚରଣେ
କିବା ଚନ୍ଦ୍ରରୁଚି ଲୋକ କେ ଜାଣେ ।

୧୨

ଅବନ୍ତୀନାଥଙ୍କୁ ଦେଖି ସୁନ୍ଦରୀ
ସ୍ୱଭାବେ କେମନ୍ତ ରୂପମାଧୁରୀ
ଏହି ନରବର          ମଣିମାଣିକ୍ୟର
ପ୍ରଭାରେ ଜାଜ୍ୱଲ୍ୟ ତପନ ପରି
ସୁବିଶାଳବକ୍ଷ ସୁବେଶଧାରୀ
ଦୀର୍ଘବାହୁ ଅହା କି ମନୋହାରୀ ।

୧୩

ମନରେ ହେଉଛି ଏ ଅନୁମାନ
ସ୍ୱର୍ଗରେ କୌଣସି ଦେବନନ୍ଦନ
ଭୂମିର ଘୃଣାରେ          ଏ ଛଦ୍ମସ୍ୱଭାବେ
କରିଣ ଅଛନ୍ତି ଶୁଭାଗମନ
ଏହାଙ୍କ ପ୍ରତାପେ ଶକ୍ରେନ୍ଦ୍ରଗଣ

ଅଚ୍ଛନ୍ନ ଚରଣେ  ସଦା ଶରଣ ॥

୧୪

ଅବନ୍ତୀନାଥଙ୍କ ଗୃହଧାନୀରେ
" ମହାକାଳ " ନାମେ ପୀଠସ୍ଥାନରେ
ଅଚ୍ଛନ୍ନ ଶଙ୍କର  ନିକଟେ ତାହାର
ଗନ୍ଧପୁର ରମ୍ୟ ହର୍ମ୍ୟ ଉପରେ
ଅବନ୍ତୀପତି ପ୍ରିୟାଙ୍କ ସଙ୍ଗରେ
ପ୍ରମୋଦ ବିହାର ରଙ୍ଗକାଳରେ ॥

୧୫

ଶଙ୍କରଙ୍କ ଶିରଚନ୍ଦ୍ରକରରେ
କୃଷ୍ଣପକ୍ଷର ଘନତମିରେ
କୌମୁଦୀଉତ୍ସବ  କର ଅନୁଭବ
କାନ୍ତ ସମସ୍ତ ଅନନ୍ଦ ମନେ
ଏହାଙ୍କୁ କରଗୋ ମୃଗନୟନେ
ସିପ୍ରାନଦୀତୀରରମ୍ୟଉଦ୍ୟାନେ—

୧୬

ପ୍ରିୟତମ ସଙ୍ଗେ ସୁଖେ ବିହର
ଯୌବନଶିରକ କୃତାର୍ଥ କର
ଯେତେବେଳେ କୁମୁଦିନୀ  ଦେଖି ଚନ୍ଦ୍ରଙ୍କି
ଅନୁରକ୍ତା ନୋହି ହୁଏ ଅନ୍ତର
ତେତେବେଳେ ଧନୀ ଦେଖି ସେ ନୃପବର
ଅନୁରକ୍ତା ନୋହି ହେଲେ ଅନ୍ତର

୧୭ *

ଏଥୁଅନ୍ତେ ସୁନନ୍ଦା ଯେ ବଚନ ବିସ୍ତାରି
କହିଲା ଋଚିରା ବାଣୀ ଶୁଣ ଗୋ ସୁନ୍ଦରି
ଶୁଣିଥିବ ପୂର୍ବକାଳେ ଥିଲେ ଏକ ମହୀପାଳେ
ସୁବିଖ୍ୟାତ କାର୍ତ୍ତବୀର୍ଯ୍ୟ ନାମ ଯେ ତାଙ୍କର
ଦେବଦତ୍ତପ୍ରସାଦେ ସହସ୍ରଭୂଜଧାରୀ
ବାହୁବଳେ ଅଷ୍ଟାଦଶଦ୍ୱୀପ ଅଧିକାରୀ ॥

୧୮

ମହାରାଜ କାର୍ତ୍ତବୀର୍ଯ୍ୟ ଯୁଦ୍ଧର କାଳେ
ଅପରାଧୀ ଜାଣିଥିଲେ ନିଜଯୋଗବଳେ
ହସ୍ତରେ ଧରି କୋଦଣ୍ଡ ଛଦ୍ମେ ଦେବାକୁ ଦଣ୍ଡ
ହୋଇଣ ଅତି ପ୍ରଚଣ୍ଡ ଶମନ୍ତୁ ଚଳିଲେ
କିସ କହିବା ଅଧିକ ତାହାଙ୍କର ବଳେ
କାରାବାସେ ଦଶଶିର ଥିଲେ ଏକ କାଳେ ॥

୧୯

ସେ ହେଗୁହେ ବଂଶେ ଜନ୍ମ ଏହି ନରପତି
ସୁଶୀଳ ସୁବୋଧ ଧୀର ପ୍ରଶାନ୍ତ ମୂରତି
ଅନୂପ ଦେଶର ପତି ରାଜଧାନୀ ମାହିଷ୍ମତୀ
ନାମରେ "ପ୍ରଦୀପ" ବୋଲି ଜଗତରେ ଖ୍ୟାତି
ଏହାଙ୍କ ପୁରରେ "ଲକ୍ଷ୍ମୀ" ଅଚଳା ଅତ୍ୟନ୍ତ
ଦରିଦ୍ରତା ଅପବାଦକୁ ଘୁଞ୍ଚାଇ ଅଛନ୍ତି ॥

୨୦

ବର ପ୍ରସାଦେ "ପ୍ରଦୀପ" ପାଇ ହୁତାଶନ

* ରାବଣ ।

ରୁକ୍ତ ମଣନ୍ତ୍ର ମହରେ ପର୍ଣ୍ଣଗ୍ରାମ ବାଣ
ଶୁଣ ଅଗୋ ବରାନନେ   ଯେବେ ବସି ବାତାୟନେ
ନର୍ମଦା ନଦୀର ଶୋଭା କରବ ଲୋକନ
ତେବେ କର "ବରମାଳା" ଏହାଙ୍କୁ ଅର୍ପଣ
ଏତେକ କହି ସୁନନ୍ଦା ହୋଇଲା ମଉନ ॥

୨୧

ଶରଦେ ମେଘାବରଣମୁକ୍ତଶଶଧର
କମଳିନୀପକ୍ଷେ ଯେସନେ ଅସନ୍ତୋଷ କର
ତେସନ ଅନୂପ ଭୂପ   ପ୍ରିୟଦର୍ଶନ ପ୍ରତାପ
ହେଲେ ନାହିଁ ତାହାଙ୍କର  ନେତ୍ରାନନ୍ଦକର
ଦେଖିଣ ସୁନନ୍ଦା ପୁଣି ଅନ୍ୟ ନୃପବର
ନିକଟକୁ ନେଇଯାଇ କହିଲା ମଧୁର ।

୨୨

ଯମୁନା ନଦୀର କୂଳେ ଶୁଣ ଗୋ ସୁନ୍ଦରୀ
"ମଥୁରା" ନାମରେ ଅଛି ମନୋହର ପୁରୀ
ନୀପବଂଶେ ସମ୍ଭୂତ   କୀର୍ତ୍ତିବନ୍ତ ଗୁଣାନ୍ୱିତ
ଏହି ବୀର "ସୁଷେଣ" ସେ ପୁରୀଦଣ୍ଡଧାରୀ
ସିଦ୍ଧାଶ୍ରମେ ଜନ୍ତୁଗଣ ହିଂସା ପରିହରି
ଥିଲ ପରି; ଗୁଣମାନେ ଅଛନ୍ତି ତାଙ୍କରି ॥

୨୩

ଯମୁନାନଦୀଗର୍ଭରେ "କାଳୀୟ" ନାମରେ
ଏକ ମହା ଅଜଗରସର୍ପ ବାସ କରେ
ପୈତ୍ରିକ ଏକବାରେ   ଖଗରାଜଙ୍କ ଭୟରେ
ପଳାଇ ଶରଣ ଗଲେ ରାଜାଙ୍କ ଛାମୁରେ

ମହାରାଜ କାଳୀପୁରଂ ମୁକ୍ତିପ୍ରଦାନରେ
ଲଭିଛନ୍ତି ଏ ଅମୂଲ୍ୟ ମଣି ପୁରସ୍କାରେ ॥

୨୪

କଣ୍ଠରେ "ସୁଷେଣ" ବୀର ମଣିକୁ ଧାରଣ
କରିବାରୁ ରଘୁଚନ୍ଦ୍ର କେତେ ଶୋଭିବନ
କୌସ୍ତୁଭଧାରୀଙ୍କ ଗର୍ବ        ହୋଇଅଛି ଏଥି ଖର୍ବ
ଏହାଙ୍କ ପଡପଦରେ କଲେ ଗୋ ବରଣ
ନନ୍ଦନକାନନ ସମ ଯେଉଁ "ବୃନ୍ଦାବନ"
ତହିଁରେ ସୁମୁଖୀ ସୁଖେ କରିବ ଭ୍ରମଣ ॥

୨୫

ଅଗ୍ରବର୍ତ୍ତୀ ଶିଖରର ଏକପାର୍ଶ୍ୱ ଦେଇ
ସ୍ରୋତସ୍ୱତୀ ନଦୀ ଯେହ୍ନେ ଭଙ୍ଗିଣ ଗମଇ
ସେହ୍ନପରି ଇନ୍ଦୁମତୀ        କଲେ ତହିଁ ବନ୍ଧୁଗତ
ବଧୂଆନନିକି ଚିହ୍ନି ସୁନନ୍ଦା କହଇ
ମହେନ୍ଦ୍ରଗିରି ସମୃଦ୍ଧ ନିକଟେ ଅଛଇ
ଏହି ବୀର ଅଧୀଶ୍ୱର ଅଟନ୍ତି ଗୋ ତହିଁ ॥

୨୬

ଯେବେ ଏହାଙ୍କ ରମଣୀ ହେବ ଗୋ ସୁନ୍ଦରି
ବାତାୟନେ ଦେଖୁଥିବ ସମୁଦ୍ରଲହରୀ
ତାଳୀବନର ମର୍ମର        ଧ୍ୱନି ଶୁଣିବ କର୍ଣ୍ଣର
ସାଗରତୀରଲବଙ୍ଗପୁଷ୍ପଗନ୍ଧହର
କେତେ ସୁଖ ଉରସ୍ଥରେ ଲଭିବ ସୁନ୍ଦରି
ନଟଳ ଏ ବାକ୍ୟ ବାଳା ଗଲେ ଅନୁସରି ।

ସୁନନ୍ଦା ଇନ୍ଦୁମତୀଙ୍କି କଲେ ସମ୍ବୋଧନ
ଖଞ୍ଜନାକ୍ଷି ବାରେ ଏଣେ ପକାଅ ନୟନ
ସମୁଦ୍ର ଅନତି ଦୂରେ  ମଳୟଗିରି ପାଖରେ
"ଉରଗ" ନାମରେ ପୁରୀ ଅଛି ବିଦ୍ୟମାନ
ପାଣ୍ଡ୍ୟ ରାଜ୍ୟ ଅନ୍ତର୍ଗତ ଅଟଇ ସେ ସ୍ଥାନ
ପାଣ୍ଡ୍ୟ ନାମରେ ବିଖ୍ୟାତ ଏ ତହିଁ ରାଜନ ॥

୨୭

ମହାରାଜ ପାଣ୍ଡ୍ୟଙ୍କର ତପକୁ ସାଧିଣ
ଅଗସ୍ତ୍ୟ ତୋଷେ କରଥିଲେ ବଶ୍ୟତାବିଧାନ
ତାଙ୍କଠାରୁ ଏକଶର  ପାଇଛନ୍ତି ପୁରସ୍କାର
ଶଙ୍କିତ ସେ ଶର ଯୋଗେ ସର୍ବ ଶତ୍ରୁଗଣ
ସୁରପୁରଜୟୀ ଲଙ୍କେଶେ ଏକଦା ରାବଣ
ଭୟେ ସନ୍ଧି କରିଥିଲେ ଏହାଙ୍କ ସଙ୍ଗେଣ ॥

୨୮

ଏ ନୃପତି ପ୍ରିୟା ହେଲେ ଏହାଙ୍କ ସହିତ
ମଳୟ ଉପତ୍ୟକାରେ ହୋଇଣ ଉପସ୍ଥିତ
ତାମ୍ବୂଳଲତାଜଡ଼ିତ  ଗୁବାକବୃକ୍ଷଶୋଭିତ
ଚନ୍ଦନତରୁରେ ଏଲାଲତା ସୁମଣ୍ଡିତ
କେମନ୍ତ ଅପୂର୍ବ ଶୋଭା ଦେବତାବାଞ୍ଛିତ
ଦେଖି ଗୋ ଏଣେନୟନି ହୋଇବ ମୋହିତ ॥

୨୯

ଇନ୍ଦୀବର ପତ୍ର ଶ୍ୟାମବର୍ଣ୍ଣ ଏହାଙ୍କର
ଗୋରୋଚନା ତୁଲ୍ୟ ତୁମ୍ଭେ ସ୍ୱବର୍ଣ୍ଣେ ଗଉର

ଏହାଙ୍କ ଅଙ୍କଶାୟିନୀ    ହେଲେ ଗୋ ରାଜନନ୍ଦନ
ସଚପଳା ମେଘମାଳା କର ପଞ୍ଚଶର
ତୁହେଁ ଦୁହିଁଙ୍କ ପକ୍ଷରେ ହୋଇବ ସୁନ୍ଦର
ଏତକ ସୁନନ୍ଦା କହି ହେଲା ତହିଁ ସ୍ଥିର ॥

୩୦

ସଞ୍ଚରଣୀ ଦୀପଶିଖା ଗୃହରେ ଯେସନ
ଅତିକ୍ରାନ୍ତ ଗୃହାବଳୀ କରେ ତମାଛନ୍ନ
ଇନ୍ଦୁମତୀଙ୍କ ଗମନେ    ପୃଷ୍ଠଗତ ରାଜଗଣେ
ନିଶ୍ଚେ ମ୍ଳାନବଦନ ହୋଇଲେ ତେସନ ।
କନ୍ୟାଙ୍କ ଆଗମନକୁ କରି ପ୍ରତୀକ୍ଷଣ
ଆନନ୍ଦେ ରହିଲେ ପୂର୍ବବର୍ତ୍ତୀ ରାଜଗଣ ॥

୩୧

ଭୁବନମୋହିନୀ ବାଳା ସେ ନୃପଦୁହିତା
ରାଜପୁତ୍ର ଅଜଙ୍କର ହେଲେ ସନ୍ନିହିତା
ଦକ୍ଷିଣବାହୁସ୍ପନ୍ଦନେ    ବରଣଭ୍ରମଭଞ୍ଜନେ
ଯୁବରାଜ ଅଜ ହେଲେ ନିଃସନ୍ଦେହଚେତା
ମଧୁକରୀ ସହକାରେ ଯେସନେ ଅନୁରତା
ରହିଲେ; ନୋହିଲେ ଧନୀ ଅନ୍ୟେ ଆକାଂକ୍ଷିତା ॥

୩୨

ଚଳିତ ଅଜଙ୍କଠାରେ ଇନ୍ଦୁମତୀମନ
ଚିହ୍ନି ସୁନନ୍ଦା ବିସ୍ତାର କଲାକ ବର୍ଣ୍ଣନ
ଏହି ଯେ ନୃପନନ୍ଦନ    କନ୍ଦର୍ପରୂପଗଞ୍ଜନ
କୁମାରି ଏହାଙ୍କୁ ମନେ ସାମାନ୍ୟ ନ ମଣ
ସୂର୍ଯ୍ୟବଂଶେ ମନୁନାମେ ଥିଲେକ ରାଜନ

ମହାପୁରୁଷ ଇକ୍ଷ୍ୱାକୁ ତାହାଙ୍କ ନନ୍ଦନ ॥

୩୪

ଏହି ବଂଶେ ଜାତ ପୁରଞ୍ଜୟ ନରପତି
ତ୍ରିଲୋକେ ବିଦିତ ଅଛି ଯାହାଙ୍କର କୀର୍ତ୍ତି
ମହାରାଜ ପୁରଞ୍ଜୟ    ପୁରନ୍ଦରଙ୍କର ସଙ୍ଗ
ଐରାବତରେ ଆରୋହି ଅସୁର ମାରନ୍ତି
ଥରେ ଅସୁରଙ୍କୁ ଯୁଦ୍ଧେ ନ ପାଇ ନୃପତି
ପିନାକୀବେଶକୁ ଧରି ଜୟ କରିଛନ୍ତି ॥

୩୫

ବୃଷକକୁଦରେ ବସି କରିଥିଲେ ରଣ
ତହିଁ କକୁତ୍ସ୍ଥ ନାମକୁ କଲେକ ଧାରଣ ।
କୋଶଳର ରାଜଗଣ    କାକୁତ୍ସ୍ଥ ନାମ ପ୍ରଦାନ
କଲେ ଆପଣା ବଂଶକୁ ପବିତ୍ର ଭାବିଣ
କୁଳପ୍ରଦୀପ ଯଶସ୍ୱୀ ସୁଗୁଣସମ୍ପନ୍ନ
କକୁତ୍ସ୍ଥ କୁଳରେ ଜାତ ଦିଲୀପ ରାଜନ ॥

୩୬

ତାହାଙ୍କ ତନୟ ରଘୁ ଜଗତେ ବିଦିତ
ତାଙ୍କ ଯଶବର୍ଣ୍ଣନ ଅମୃତ ସାଧ୍ୟାତୀତ
ଜଗଦାନନ୍ଦବର୍ଦ୍ଧକ    ମହାତେଜା ସୁଦେବଙ୍କ
ରଘୁତନୟ ଏ ଅଜ ଅତି ସୁଶିକ୍ଷିତ
ଏହାଙ୍କୁ କରଣ ରଘୁ ରାଜ୍ୟେ ପ୍ରତିଷ୍ଠିତ
ଯୋଗସାଧନେ ନିବିଷ୍ଟ କରନ୍ତି ଚିତ୍ତ ॥

୩୭

ପିତୃଦତ୍ତରାଜ୍ୟଲକ୍ଷ୍ମୀର କରଣି ବହନ

ସୁନନ୍ଦେ କରୁଛନ୍ତି ତାହା ସମ୍ପାଦନ
ଦେଖ ଗୋ ଚନ୍ଦ୍ରବଦନ, ନୃପକୁଳଚୂଡ଼ାମଣି
ଅପୂର୍ବ ସୁନ୍ଦରରୂପ କି ନବଯୌବନ
ଏହାଙ୍କ କଣ୍ଠରେ ମାଳା କଲେକ ଅର୍ପଣ
ହେବ ଦୁହିଙ୍କର ଯୋଗ ମଣିରେ କାଞ୍ଚନ ॥

୩୮

ସ୍ୱାଭାବିକ ଲଜ୍ଜା ହେତୁ ସେ ମନୋହାରିଣୀ
ମାଳା ଅର୍ପିବାକୁ କହି ନ ପାରିଲେ ବାଣୀ
ତାଙ୍କ ମନୋଭାବ ଜାଣି ନ ଜାଣିଲାପରି ପୁଣି
ସୁନନ୍ଦା ବୋଇଲା ଅଗୋ ନରେନ୍ଦ୍ରନନ୍ଦନ
ଅନ୍ୟ ନୃପଙ୍କର ହୁଅ ସମୀପବର୍ତ୍ତିନୀ
କଟାକ୍ଷନିକ୍ଷେପେ ମନା କଲେ ତାକୁ ଧନୀ ॥

୩୯

ଉପମାତା ଧୃଷ୍ଟତାକୁ ଚିହ୍ନିଲେ ମନରେ
ବରମାଳା ନେଇ ଦିଅ କହିଲେ ସୁସ୍ୱରେ
ସୁନନ୍ଦା ଆଦେଶ ପାଇ ଅଜଙ୍କ ନିକଟେ ଯାଇ
ଶୁଭପୁଷ୍ପମୟୀ ମାଳା ଅର୍ପିଲା କଣ୍ଠରେ
ଇନ୍ଦୁମତୀବାହୁପାଶ ଅଛି ମୋ ଗଳାରେ
ଏହି ବୋଧ ଯୁବରାଜ କଲେ ଆନନ୍ଦରେ ॥

୪୦

"ଶରଚ୍ଚନ୍ଦ୍ରେ ଉପଗତା ଯେସନ୍ତେ କୁମୁଦନୀ
ଜଳନିଧିଅନୁଗତା ହୁଏ ମନ୍ଦାକିନୀ
ସେହିପରି ସମଗୁଣ ଏ ବରକନ୍ୟାବରଣୀ
ପୁରବାସିଙ୍କ ମୁଖରୁ ହେଲା ଏହିବାଣୀ

ଅଜଙ୍କ ପ୍ରଶଂସା ତହିଁ ସ୍ୱଜାମାନେ ଶୁଣି
ବ୍ୟଥିତ କୁଣ୍ଠିତ ହେଲେ ତାହା କଷ୍ଟ ମଣି ॥

୪୧

ପ୍ରାତଃକାଳେ ଏକପାର୍ଶ୍ୱେ ପଦ୍ମ ପ୍ରସ୍ଫୁଟିତ
ଅନ୍ୟପାର୍ଶ୍ୱେ କୁମୁଦିନୀ ହେଲେ କମ୍ପିତ
ଯେଉଁପରି "ସରୋବର" ହୋଇଥାଏ ଶୋଭାକର
ସେହିପରି ସ୍ୱୟମ୍ବରସ୍ଥଳ ସୁଶୋଭିତ
ବରପକ୍ଷଜନେ ତହିଁ ହେଲେ ପ୍ରମୁଦିତ
ଅନ୍ୟପକ୍ଷରାଜଗଣ ହୋଇଲେ ଲଜ୍ଜିତ ।

---

ଧ୍ରୁବଙ୍କ ପଳାୟନ ଜନିତ
ସୁନୀତଙ୍କର ରୋଦନ ।

୧

ଅଭାଗିନୀ ଧ୍ରୁବମାତା ବିରସବଦନେ
ବ୍ୟାକୁଳିତ ହୋଇ ଦୁଃଖେ କରନ୍ତି ରୋଦନ
ହାୟ ! ଦୀନବନ୍ଧୋ ତାତ ଧ୍ରୁବ ଅଦର୍ଶନେ
ଅଶ୍ରୁ ପରିପୂର୍ଣ୍ଣ ହେଲା ଯୁଗଳଲୋଚନ;
କାହିଁ ଗଲୁ ମୋ ଜୀବନ ରଙ୍କୁଣୀର ଧନ
ଏ ଅରଣ୍ୟମଧ୍ୟେ ମୋତେ କରି ଏକାକିନୀ,
ବଦୀର୍ଣ୍ଣ ହେଉଛି ହୃଦ ରେ ପ୍ରିୟଦର୍ଶନ
ବୋଲି ଛିନ୍ନତରୁପରି ଭୂତଳଶାୟିନୀ;
ସୁନୀତରୋଦନ ଶୁଣି ନିବିଡ଼କାନନ,
ପ୍ରତିଧ୍ୱନି ଛଳେ କଲା ସୁହାଧି ରୋଦନ

୨

କ୍ଷଣାନ୍ତରେ ଧ୍ରୁବମାତା ଚୈତନ୍ୟ ଲଭିଲେ

ଦୀର୍ଘସ୍ୱରେ କ୍ଷୋଭରେ କଲେକ ରୋଦନ,
ଜୀବନର ମୁଖଚନ୍ଦ୍ର ଆଉ ନ ଦେଖିଲେ
ଏ ଜୀବନ ରଖି ହେବ କିସ ପ୍ରୟୋଜନ;
ଶୁଣ ଶୁଣ ବସୁମତି ମୋର ନିବେଦନ
ଦୟା କରି ଦ୍ୱିଖଣ୍ଡିତ ହୁଅ ଗୋ ମେଦନ,
ଜୀବନର ସବୁ ଆଶା କରି ଉଚ୍ଛେଦନ,
ତବଗର୍ଭେ ପ୍ରବେଶିବ ଏହି ଅଭାଗିନୀ ।

୩

ଦଗ୍ଧଚିତ ସନ୍ତାପିତ ଅହେ ତରୁଶ୍ରେଣି
ଦେଖିଚ କି ଗୃହ ସର୍ବେ ରକ୍ଷଣୀଧନକୁ,
କହିଦିଅ ତୃପ୍ତ ହେବେ ମୋର ଚକ୍ଷୁ ବେନି
ଦେଖି ସୁଖେ କୋମଳାଙ୍ଗ କୁମାର ଧ୍ରୁବକୁ;
ତରୁନିକେତନେ ଅଛ ଯେ ବିହଙ୍ଗଦଳ
ଏ ଦୁଃଖିନୀ ଦୁଃଖବାର୍ତ୍ତା କରରେ ଶ୍ରବଣ,
ଧ୍ରୁବ ବିନା ଏ ଜୀବନ ହେଉଛି ବିକଳ
ଧ୍ରୁବକୁ କି ଦେଖିଅଛ କହି ରଖ ପ୍ରାଣ ।

୪

ଭୁବନବାହିନୀ ମାତଃ ଅଗୋ ସ୍ରୋତସ୍ୱତି
ତବ ସ୍ରୋତେ ବହମାନ ଧ୍ରୁବ କି ମୋହର,
ରକ୍ଷିତ କି ଲୁକ୍କାୟିତ କରି ମୋ ସମ୍ପତ୍ତି
ଦିଅ ଦିଅ ମାତଃ ଆଉ ବିଳମ୍ବ ନ କର;
ଶୁଣ ମାତଃ ବନଦେବୀ ବନଗ୍ରନ୍ଥେଶ୍ୱରୀ ,
ତବ ଦାସୀ ଅଭାଗିନୀ ଧ୍ରୁବର ଜନନୀ,
ଦାସୀ ପୁତ୍ରର ଭାର ନିଏ ହେଲ ହରି

ଧୂଳିଧୂସରିତଦେହ ଲୁଟଇ ଧରଣୀ;
ମାତଃ ତୁମ୍ଭେ ଜ୍ଞାତ ହୁଅ ସକଳ ଘଟିତ
ତବ ଚକ୍ଷୁ ସମ୍ମୁଖରେ ଅଛି ଉନ୍ମୀଳନ,
ହିଂସ୍ରଜନ୍ତୁ ଗ୍ରାସେ ଯେବେ ଧ୍ରୁବ କବଳିତ
ହେଲେ ନପଡ଼ିବ ଅବା କହ ଗୋ ବହନ ।

୫

ହୋଇଲା ଆକାଶବାଣୀ ସୁନୀତିକର୍ଣ୍ଣରେ
ସ୍ଥିର ହୁଅ ସ୍ଥିର ହୁଅ ଧ୍ରୁବର ଜନନୀ,
ତବ ପୁତ୍ର ନିତ୍ୟପଦେ ଅଛି ଏ ବନରେ
ତାର କୀର୍ତ୍ତି ଚିରକାଳ ଘୋଷିବ ମେଦିନୀ,
ସେ ପୁତ୍ର ସାମାନ୍ୟ ନୁହେ ଅତି ତେଜସ୍କର
କି କରିବେ ବନଚର ହିଂସ୍ରଜନ୍ତୁଗଣ,
ପ୍ରତିଜ୍ଞାପାଶରେ ବଦ୍ଧ ତାହାର ଅନ୍ତର
ପାଇଲେ ଫେରିବ ଧ୍ରୁବ ସେହି ନିତ୍ୟଧନ ।

---

ଶମନପ୍ରତି ।

ଅଶ୍ଚର୍ଯ୍ୟକ୍ଷମତା ତୋର ଅଛିରେ ଶମନ
ତୋର କ୍ଷମତାରେ ବାଧ ନୁହେ କେଉଁ ଜନ,
ଦେଖାଉଛୁ ଜୀବଗଣେ "ଅସ୍ଥିରତା" ଅନୁକ୍ଷଣେ
ଜଗତରେ କିଛି ରହୁନାହିଁ ବିଦ୍ୟମାନ
ପଦ୍ମପତ୍ରଜଳ କିମ୍ବା ବିଦ୍ୟୁତ ସମାନ । ୧ ।
ନାନାରୂପ ଖେଳ ତୋର ଅତିଚମତ୍କାର
ଦେଖି ମନେ ହୁଏ ମୋର ବିସ୍ମୟ ଅପାର
କେତେ ଲୋକ "ଆଶାତରୀ" ଡୁବାଇ ସମୂଳରୁ
କେତେ ଭାଙ୍ଗି ଚୂର୍ଣ୍ଣ କରୁ ଭଗ୍ନ ମାନ ସାର

ନିଷ୍ଠୁରଭାବକୁ ଧରୁ ନ କରୁ ବିଚାର । ୨ ।
ତୋର ସହଚର ମୃତ୍ୟୁ ଚଉଷଠି ରୋଗ
ମାନବଶରୀର ସଦା କରୁଛନ୍ତି ଭୋଗ
ବଳ ବୀର୍ଯ୍ୟ ରକ୍ତ ମାଂସ        କ୍ରମେ କ୍ରମେ କରି ଗ୍ରାସ
ତୋ ହସ୍ତେ "ଜୀବନଦୀପ" କରନ୍ତି ପ୍ରୟୋଗ,
ପ୍ରବଳ ନିଶ୍ୱାସେ ତୋର ହୁଏ ସେ ବିୟୋଗ । ୩ ।
ଏ ଭୂମିମଣ୍ଡଳେ ଜାତ ହୋଇ ବୀରଗଣ
ନାନା ଖେଳ କଉତୁକ କଲେ ସମ୍ପାଦନ
ସାତ କେତେ ରଣସଜ୍ଜା        ଉଡ଼ାଇଲେ ଜୟଧ୍ୱଜା
ତୋ ସଙ୍ଗେ ଘଟିଲା ପୁଣି ଯେବେ ତାଙ୍କ ରଣ
ପରାଜିତ ହୋଇ କଲେ ଅନନ୍ତଶୟନ । ୪ ।
ସାହସଶିଖରୀଚୂଡ଼ା ବୀର ଚୌହାଣ
କରିବ ସ୍ୱଦେଶ ଦୁଃଖ ସମୂଳେ ଛେଦନ
ଏତେ ବଳ ଥିଲା ଯାର        ତୋର କ୍ଷମତାରେ ତାର
କି କ୍ଷମତା ଏକପଦ କରିବ କ୍ଷେପଣ
ସବୁ ପରିହରି କରେ ଭୂତଳେ ଶୟନ । ୫ ।
ସୁକୁମାର ସ୍ନେହାଧାର ଅପୂର୍ବସୁନ୍ଦର
ସୁଧାକରସମ ମୁଖ ସୁମଧୁର ସ୍ୱର
ଏରୂପ କୁମାର କୋଳେ        ଧରି ମାତା ସ୍ନେହଭୋଳେ
ଭବିଷ୍ୟତ ସୁଖରାଶି ଭାବନ୍ତି ମନର
ମରୀଚିକାସମ ସୁଖ କରୁ ତୁ ତାଙ୍କର । ୬ ।
ଅନୁପମା ମନୋରମା ସୁଶୀଳା କାମିନୀ
ପ୍ରତିବିମ୍ବସମ ସ୍ୱାମୀସଙ୍ଗବିହାରିଣୀ
କ୍ଷଣେ ସ୍ୱାମୀ ଅଦର୍ଶନ        ଯେ ମଣେ ବଜ୍ରପତନ

ସେ ପୁଣି ଧର୍ମ୍ମଶାସ୍ତ୍ରିନୀ ଚରିତ୍ରରକ୍ଷଣୀ ।
ତୋ ଦୀକ୍ଷାଗୁରୁକା ଏକା ସେ ପ୍ରେମଦାୟିନୀ । ୭ ।

---

## ପ୍ରଭାତ ।

ବିଗତା ରଜନୀ ହେଲା ପ୍ରଭାତ
ପୂର୍ବର ଆକାଶ ହୋଇଲା ପ୍ରକାଶ
ଧୀରେ ଧୀରେ ବହେ ଶୀତଳ ବାତ । ୧ ।
ପକ୍ଷୀଗଣ କଲେ ସଙ୍ଗୀତ ଗାନ
ବୀଥୀ ଉପରେ ଶାଖାସଦନରେ
ବସି ଆନନ୍ଦରେ, ମୋହିତ ପ୍ରାଣ । ୨ ।
ସଞ୍ଚିତଶିଶିର ବୃକ୍ଷପତ୍ରରେ
ପଡେ ଧରତଳ ଦିଶେ ମୁକ୍ତାଫଳ
ସମାନ, ମାନବ ମାନସ ହରେ । ୩ ।
ପର୍ବ୍ବତଗହ୍ୱର ଫେଡ଼ି ବହନ
ଲୋହିତବରଣ ଉଠିଲା ତପନ
ଛୁଇଁଲା ମେଦିନୀଖଣ୍ଡେ କିରଣ । ୪ ।
ଶିଖରୀଚୂଡ଼ାରେ ତପନକର
ପଡି କିବା ଶୋଭା ଅତି ମନୋଲୋଭା
ହେମମୟ ଦିଶୁଅଛି ଶିଖର । ୫ ।
ପାଇ ନଳପତ୍ରତପନଭାତି ।
ସରସିଂହାସନେ ସହାସ୍ୟବଦନେ
ପଦ୍ମିନୀ ପ୍ରକାଶେ ନିର୍ମ୍ମଳକାନ୍ତି । ୬ ।
ଭୟେ ନିଶାଚରଜନ୍ତୁମାନେ
ପର୍ବ୍ବତକନ୍ଦରେ ଅରଣ୍ୟପ୍ରାନ୍ତରେ
ରହିଲେ ବୃକ୍ଷର ନିବଡ଼ସ୍ଥାନେ । ୭ ।

ଉନ୍ନତ ହୋଇଣ ଭ୍ରମରଚୟ
ପୁଷ୍ପିତ ଉଦ୍ୟାନ    ମଧ୍ୟେ ମଧୁପାନ
କଲେ ଗୁଞ୍ଜରବ ଆନନ୍ଦମୟ । ୮ ।
ଶଯ୍ୟା ତ୍ୟାଗ କରି ଧାର୍ମିକଗଣ
ପବିତ୍ର ଭାବରେ    ଏକାନ୍ତ ମନରେ
କଲେ ଶ୍ରୀପତିନାମ ଭଜନ । ୯ ।
ଗୋପାଳେ ଗୋଧନ ଘେନି ଚଳଲେ
କୃଷିଜୀବୀଗଣ    କ୍ଷେତ୍ରକର୍ଷଣ
ମାନସେ କ୍ଷେତ୍ରକୁ ଧୀରେ ଗମିଲେ । ୧୦ ।
ଯେ ଯାହାର କାର୍ଯ୍ୟେ ନିବିଷ୍ଟଚିତ୍ତ
ଅଳସୁଆନର    ନିଜକଳେବର
କେବଳ ଶଯ୍ୟାରେ କଲେ ଭୂଷିତ । ୧୧ ।

---

ନୀତି ।

ବଞ୍ଚକ ସଙ୍ଗେ ବନ୍ଧୁତା କରେ ଯେଉଁ ଜନ,
ନଷ୍ଟ ହୁଏ ଧନମାନ    ନଷ୍ଟ ହୁଏ ତାର ପ୍ରାଣ
ବଞ୍ଚକ ଅଟଇ କାଳସର୍ପର ସମାନ । ୧ ।
କପଟତା ପରିହରି ସରଳତା ଧର,
ତେବେ ହେବ ମହାସୁଖ    ଦୂର ହେବ ସବୁ ଦୁଃଖ
କପଟତା ଅଟେ ସବୁ ଦୋଷର ଆକର । ୨ ।
ଦୟାବତୀ ବସୁମତୀ କରେ ଯଥା ଦାନ,
ସେହି ପରି ବିଜ୍ଞଜନ    ଯଥାଶକ୍ତି ବିତରଣ
କରେ ଧନ ଦୀନଜନେ, ପାଏ ସ୍ୱର୍ଗସ୍ଥାନ । ୩ ।
ଅଗାଧ ଗମ୍ଭୀର ଅଟେ ଯଥା ରତ୍ନାକର,
ସାଧୁହୃଦପାରାବାର    ସୁଗମ୍ଭୀର ସେ ପ୍ରକାର

ବିପରୀତ ଅଟେ ପୁଣି ଅସାଧୁ ଅନ୍ତର । ୪ ।
କର୍କଶସ୍ୱରରୁ ଯଥା କାକ ନିନ୍ଦନୀୟ,
କଠୋର ବଚନ ଯାର ଲୋକେ ତଥା ନିନ୍ଦା ତାର
କୋମଳବଚନଭାଷୀ ଲୋକ ମାନନୀୟ । ୫ ।
ସର୍ବଦା ସନ୍ତୁଷ୍ଟ ଥାଏ ସାଧୁଜନମନ,
ଅସାଧୁ ଅସନ୍ତଚିତ୍ତ ସଦା ଲୋଭେ ଆକର୍ଷିତ
ଦୁରାଶାବାରିଧି ତାର ନ ହୁଏ ପୂରଣ । ୬ ।
ପଦ୍ମହୀନସରୋବର ଯଥା ଅସୁନ୍ଦର,
ଦୟାହୀନ ଯେଉଁ ନର ହୁଏ ତାର ଅନାଦର
ଅନ୍ୟ ଗୁଣେ ତତୋଽଧିକ ନୁହେ ଶୋଭାକର ।୭।
ବିଶୁଦ୍ଧ ସରଳମତି ଦୟାଳୁ ଯେ ଜନ,
ପର ଆପଣା ବିଚାର ଛାଡ଼ି ଲୋଭ ଅହଂକାର
ଆତ୍ମବତ ସର୍ବଭୂତେ କରନ୍ତି ଦର୍ଶନ । ୮ ।
ଈଶ୍ୱରଙ୍କ ନିୟମ ଯେ କରଇ ଲଙ୍ଘନ,
ରୋଗେ ସଦା ଅସ୍ୱସ୍ଥାନ ଦୀନ ଦୁଃଖୀ ଧନୀ ମାନୀ
ସକଳେ ଲଭନ୍ତି ସମ ଭାବରେ ଶାସନ । ୯ ।
ସବଳ ଦୁର୍ବଳ ପ୍ରତି କରେ ଅତ୍ୟାଚାର,
କିନ୍ତୁ ଜଗତଈଶ୍ୱର ଦେବେ ଦଣ୍ଡ ଗୁରୁତର
ନିରପେକ୍ଷଭାବେ ହେବ ସେଠାରେ ବିଚାର । ୧୦ ।
ବହୁ ଯତ୍ନେ ହୁଏ ସତ ଧନ ଉପାର୍ଜିତ,
ଧନଠାରୁ ବଡ଼ ମାନ ମାନହୀନେ ମୃତଜ୍ଞାନ—
କର ଧନ ଛାଡ଼ି ମାନ ରଖିବା ବିହିତ । ୧୧ ।
ପରଉପକାରେ ଧନ ଲାଗେ ସଜ୍ଜନର,
ସମୁଦ୍ରର ରତ୍ନମଣି ପୃଥିବୀର ହୀରାଖଣି

ମନୁଷ୍ୟର କାର୍ଯ୍ୟ ଲାଗେ କି ହୁଏ ତାଙ୍କର ।୧୨।
ଅମୂଲ୍ୟ ସମୟ ବୃଥା ନ କର ହରଣ,
ନଦୀସ୍ରୋତ ଗିରନ୍ଧ୍ର ପଛୁ ଗତ ସମୟର
ଗତକାଳ ସଙ୍ଗେ ତବ ନ ହେବ ମିଳନ । ୧୩ ।
ପରନିନ୍ଦା ପରହିଂସା ପର ଅପକାର,
ନାଟ୍ୟ ନୃତ୍ୟ ସାଧେ ଖେଳ ହୋଇ ଅତି କୁତୂହଳ
ନିଜଦୋଷ ସଂଶୋଧନ ନ କରେ ବର୍ବର ।୧୪।
ସୂର୍ଯ୍ୟାଲୋକେ ଅନ୍ଧକାର ହୁଏ ଯଥା କ୍ଷୀଣ,
ତଥା ବିଦ୍ୟାର ଆଲୋକ ନାଶ କରେ ଦୁଃଖ ଶୋକ
ଦୁଷ୍ଟ ବୃତ୍ତିଚୟ ସବୁ ହୁଅନ୍ତି ମଳିନ । ୧୫ ।
ଘନୋଦୟେ ପୂର୍ଣ୍ଣଚନ୍ଦ୍ରଶୋଭା ବିନାଶିତ,
ମନ୍ଦ ଲୋକ ଯଦି ପଶେ ମିଳେ ସଜ୍ଜନର ପାଶେ
ସଜ୍ଜନସ୍ୱଭାବଆଭା କରେ କଳଙ୍କିତ । ୧୬ ।
ଦିବାରଜନୀର ଯଥା ହୁଏ ପରିବର୍ତ୍ତନ,
ସେହିପରି ଏ ପ୍ରକୃତ ମାନବମାନସମ୍ପତ୍ତି
ସୁଖ ଦୁଃଖ ରୋଗ ଶୋକ ହୁଅନ୍ତି ଘଟନ । ୧୭ ।
ଅନ୍ଧ ନ ଦେଖେ ଯେପରି ପ୍ରକୃତ ଆକାର,
ଅଳସ ଶ୍ରମକାତର ମୂର୍ଖ ନିରୁଦ୍ୟମୀନର
ନ ଦେଖଇ ଧନ ମାନ ଜ୍ଞାନ ପାରାବାର । ୧୮ ।
କ୍ଷୁଦ୍ର କ୍ଷୁଦ୍ର ଗୁଣେ ଯଥା ରଜ୍ଜୁ ସଂଘଟନ,
ବହୁଜନ ଏକମନ ହେଲେ ଐକ୍ୟତାସାଧନ
ସେହି ବଳେ ମିଳେ ସୁଖସ୍ୱାଧୀନତା ଧନ । ୧୯ ।
ନାନାସୁଖ ହୁଏ ବିଦ୍ୟା ଧନ ମାନ ପାଇ,
କିନ୍ତୁ ଯେ ପ୍ରକୃତ ସୁଖ ସେ ସୁଖେ ସର୍ବେ ବିମୁଖ
ସେହି ସୁଖ "ଶାନ୍ତି ସୁଖ" ଧର୍ମେ ଅନ୍ୟେ ନାହିଁ ।୨